# ଭୀମଭୋଇ ଚଉତିଶା ଭଜନ

## ଦ୍ୱିତୀୟ ଭାଗ



# ଭୀମ ଭୋଇଙ୍କ ରଚିତ
# ଚଉତିଶା ଭଜନ

ବରଗଡ଼ ଜିଲ୍ଲା ବନହର ଗ୍ରାମ ହରି ପଣ୍ଡାଙ୍କ ବଂଶଜ ନାତୁଣୀ
ଶାନ୍ତିଲତା ଦାସଙ୍କ ଗୃହରୁ ତାଳପତ୍ର ପୋଥିରୁ ସଙ୍କଳନ

୨୦୨୨ ମାଘ ପୂର୍ଣ୍ଣିମା

*ପ୍ରକାଶକ*
ବାବା ଦିନବନ୍ଧୁ ଦାସ
ମହିମା ଗାଦି ଢେଙ୍କାନାଳ, ଓଡ଼ିଶା

[redacted]

# ଭୀମ ଭୋଇଙ୍କ ଚଉତିଶା ଭଜନ
## (ଦ୍ୱିତୀୟ ଭାଗ)

ସଙ୍କଳନ :
**ବାବା ଦିନବନ୍ଧୁ ଦାସ,**
ମହିମାଗାଦି, ଢେଙ୍କାନାଳ, ଓଡ଼ିଶା

ପ୍ରକାଶକ :
**ବାବା ଦିନବନ୍ଧୁ ଦାସ**
ମହିମା ଗାଦି ଢେଙ୍କାନାଳ, ଓଡ଼ିଶା
**Baba Dinabandhu Das**
Mahimagadi Dhenkanal, Odisa
Mob- 9937494794, 8917253069
sadhudinabandhudas@gmail.com



ପ୍ରଥମ ସଂସ୍କରଣ :
**ଫେବୃଆରୀ-୨୦୨୨**

ମୁଦ୍ରଣ :
**ପ୍ରିଣ୍ଟଟେକ୍ ଅଫ୍‌ସେଟ୍ ପ୍ରା:ଲି:**
ଚନ୍ଦ୍ରଶେଖରପୁର, ଭୁବନେଶ୍ୱର
ଫୋନ: ୯୩୩୭୧୦୦୩୯୬

ମୂଲ୍ୟ : ଟ. ୪୦/-

# ମୁଖବନ୍ଧ

**ପ୍ରାଣୀଙ୍କ ଆରତ ଦୁଃଖ ଅପ୍ରମିତ ଦେଖୁ ଦେଖୁ କେବା ସହୁ ।**
**ମୋ ଜୀବନ ପଛେ ନର୍କେ ପଡ଼ିଥାଉ ଜଗତ ଉଦ୍ଧାର ହେଉ ।।**

ସନ୍ଥ କବି ଭୀମଭୋଇଙ୍କ ଏ ବାଣୀ ସାରାବିଶ୍ୱ ମାନବ ସମାଜର ହୃଦୟକୁ ଛୁଇଁ ପାରିଛି । ଏହି ମହାନ୍ ସନ୍ଥ ପୃଥିବୀର ଅଦ୍ୱିତୀୟ । ଯିଏ କି; ପ୍ରତିଟି ମୁହୂର୍ତ୍ତରେ ବ୍ରହ୍ମାଣ୍ଡର ଜୀବଜଗତ ରକ୍ଷାପାଇଁ ପରମାତ୍ମାଙ୍କଠାରେ ପ୍ରାର୍ଥନା କରୁଥିଲେ । ତାଙ୍କର ଆଉ କିଛି ରଚିତ ଚଉତିଶା ଭଜନ ପ୍ରକାଶିତ ହୋଇ ନ ପାରି ହରିପଣ୍ଡାଙ୍କ ବଂଶଜ ନାତୁଣୀ ଶାନ୍ତିଲତା ଦାସଙ୍କ ଘରେ ତାଳପତ୍ର ପୋଥି ରହିଥିଲା । ବରଗଡ଼ ଜିଲ୍ଲା ଅତାବିରା ଥାନ, ବନହର ଗ୍ରାମର ହରିପଣ୍ଡା ଓ ବସୁପଣ୍ଡା ସେତେବେଳେ ଭୀମଭୋଇଙ୍କ ପାଖରେ ରହି ଭୀମଭୋଇ ଗାଉଥିବା ଭଜନ ଜଣାଣଗୁଡ଼ିକୁ ତାଳପତ୍ର ପୋଥିରେ ଲିପିବଦ୍ଧ କରୁଥିଲେ । ୨୦୨୧ ମସିହା ମାର୍ଗଶୀର ପୂର୍ଣ୍ଣିମାରେ ଆମେ ବନହର ଗ୍ରାମର ଶାନ୍ତିଲତା ଦାସଙ୍କ ଘରକୁ ଯାଇ ତାଳପୋଥି ଗୁଡ଼ିକୁ ପଢ଼ିଥିଲୁ ଏବଂ ଜାଣିପାରିଲୁ ଯେ ଏହି ଚଉତିଶାଗୁଡ଼ିକ ମୁଦ୍ରଣ ହୋଇପାରି ନାହିଁ । ଆଉକିଛି ତାଳପତ୍ର ପୋଥି ଉଇଖାଇ ନଷ୍ଟ ହୋଇଯାଇଥିଲା । ଏହି ଚଉତିଶା ଭଜନର ମୁଖ୍ୟ ଆକର୍ଷଣ ହେଲା ଚତୁର୍ଦ୍ଦଶ ଚଉତିଶାଟି 'କ୍ଷ'ଠାରୁ 'କ' ପର୍ଯ୍ୟନ୍ତ ପ୍ରତିଟି ପଦ କେବଳ ବ୍ରହ୍ମାଣ୍ଡକୁ ଦୁର୍ବିପାକରୁ ରକ୍ଷା ପାଇଁ ଭିନ୍ନ ଭିନ୍ନ ଶୈଳୀରେ ଭୀମଭୋଇ ପ୍ରାର୍ଥନା କରି ଲେଖିଛନ୍ତି । ଭଗତ ଜଗତ ଏହି ଭଜନ ଗାୟନ କରି ଜୀବନକୁ ସାର୍ଥକ କରିବେ ଏହା ହିଁ ଆମର ଲକ୍ଷ୍ୟ । ଆସନ୍ତା ୨୦୨୨ ମହିମା ମାଘମେଳା ଗୁରୁପୂର୍ଣ୍ଣିମାରେ ଏହି ପୁସ୍ତକ ପ୍ରକାଶିତ କରିବାପାଇଁ ପ୍ରଭୁଙ୍କଠାରେ ଆମ୍ଭର ପ୍ରାର୍ଥନା ।

**ବାବା ଦିନବନ୍ଧୁ ଦାସ**
ମହିମା ଗାଦି ଢେଙ୍କାନାଳ

[redacted]

# ପ୍ରଥମ ଚଉତିଶା

କଳିଯୁଗେ ମତେ କନ୍ଧ ପାଟକରେ କରିଅଛ ପ୍ରଭୁ ଜନମ, କରତା ପୁରୁଷ ଶ୍ରୀଚରଣ ତଳେ କରି ମୁଁ ଅଛି ଦୋଷମାନ। ଆହେ ଅଲେଖ, କିସ ଲେଖି ଅଛ କର୍ମରେ, ହାନି ଲାଭ କଥା, କିଛି ନ ଜଣାଇଁ କି ହେବ ଭିତର ବାହାରେ ॥୧॥

କ୍ଷମା ସାଗର ଚରଣେ ଅପରାଧ କରି ମୁଁ ଅଛି ନିରନ୍ତର, ଖିରସିନ୍ଧୁ ବାସି ପାପଭାରା ନାଶି ଦୟାକରି ମତେ ଉଦ୍ଧର। ଆହେ ଅଲେଖ, କ୍ଷିତି ମଧ୍ୟେ ଯାତ କରିଛ, କ୍ଷମାଦି ପୁରୁଷ, କାହିଁରେ ନ ଲାଗି ଆକାଶ ମଣ୍ଡଳେ ରହିଛ ॥୨॥

ଜ୍ଞାନ ଅଜ୍ଞାନ ମାର୍ଗେ ମତେ ପକାଇ ଦ୍ରୋହି କରାଉଛ, ଛାମୁରେ, ଗତି ପତି ସ୍ୱାମୀ ଗର୍ବ କରାଉଛ ଗୁହାରି ବି, କାହା ଆଗରେ। ଆହେ ଅଲେଖ। ଗୁରୁଦେବ ଅଟ ମୋହର। ଗତ ଆଗତ ବର୍ତ୍ତମାନ ସହିତ ସକଳ ଅଟଇ ତୁମର ॥୩॥

ଘୋରବନେ ମୋତେ ଘାଣ୍ଟି ମାରୁଅଛ ଘାରି ହେଉଅଛି ହୃଦୟ। ଘନଶ୍ୟାମ ପାଦେ ଦୋଷି କରାଉଛ, ମାଡୁଅଛି ମୋତେ ସଂଶୟ। ଆହେ ଅଲେଖ, ଘଟଣା କରିଛ ଯହିଁକି, ଭଗତ ହେବାକୁ ଶକତି ନାହିଁ ମୋ ଅଯୋଗ୍ୟ ଅଟେ ମୁଁ ତହିଁକି ॥୪॥

ଅନୁସରିସରି ଅଲେଖ ଛାମୁରେ ମିଳିଛି କଲମ ଖଣ୍ଡିଏ। ସେହି ପାଦେ ମୋତେ ଅପରାଧି କରି ପଛେ ଅବା ପ୍ରଭୁ ଦଣ୍ଡିବେ, ଆହେ ଅଲେଖ, କିଛି ନ ଜାଣଇଁ ମନରେ। ଯାହା କରି ଯିବେ ଗୁରୁଙ୍କର ଇଚ୍ଛା ମହାଘୋର କଳିଯୁଗରେ ॥୫॥

ଚିରାନନ୍ଦଙ୍କୁ ମୁଁ ଆଶ୍ରେ କରି କରି ହେତୁ ଚେତା ଟିକେ ପାଇଛି, ଚାରୁଚରଣରେ କଳ୍ପନା କରାଇ ଫେରିବା ହରଣ ହେଉଛି। ଆହେ ଅଲେଖ, ଅନ୍ଧାର ନିଶିରେ କି; ଚାନ୍ଦ, ଅଜ୍ଞାନ ପାମର ଜଣାଣ କରୁଛି କିଛି ନ ଜାଣେ ଭଲ ମନ୍ଦ ॥୬॥

ଛପନା କୋଟିରୁ ଅଟଇ ମୁଁ ସାନ ଶ୍ରୀଛାମୁକୁ କାହିଁ ଭାର୍ଜନ। ଛତ୍ରପ୍ରାଏ ପାଦେ ତପସ୍ୟା କୁ ନାଶି କରୁ ବା ଅଛି ମୋର ମନ। ଆହେ ଅଲେଖ। ବିପରୀତ କଥା ହେଉଛି। ଛାର କୀଟ ଜୀବ ଗ୍ରାହାର୍ଯ୍ୟ ହେବାକୁ ଭାଗ୍ୟ ମୋହର କାହିଁ ଅଛି ॥୭॥

ଯୋଗୀନ୍ଦ୍ର ପୁରୁଷ ଚରଣେ ଏ ଜୀବ ଅପରାଧି ହୋଇ ମରିଛି। ଜଗତକରତା ଜନନୀ ବୋଲି ମୁଁ ପଞ୍ଚଭୂତ ମନେଡରୁଛି। ଆହେ ଅଲେଖ, ଛପନା କୋଟିର ଶକତି। ସେହି ମଣ୍ଡଳେ ଯାହାକୁ ବସାଇବେ ସେ ସିନା ହେବ ପ୍ରାଣପତି ।।୮।।

ଝଟକ ବିଦ୍ୟୁ ପରାଏ ରୂପକାନ୍ତି ଝଡ଼ିପଡ଼ିବେ ସୁରଲୋକ, ସେହିଠାରେ ମତେ ଦୋଷୀ କରି ଅବା ଲେଖି ଥୋଇ ଅଛ ମାଳିକା, ଆହେ ଅଲେଖ, ଯାହା ବିଚାରୁଛ ଆପଣ। ମୋହ ଛାରବେଳେ ନାସ୍ତି କରି ନୋହେ ସତ୍ୟ ସଦ୍‌ଗୁରୁ ବଚନ ।।୯।।

ନିଶି ଦିବସରେ ଭାଳେଣି କରୁଛି ନାମରେ ଅପରାଧି ହୋଇ, ନିର୍ଣ୍ଣୟ ବାରତା କିଛି ନ ଜାଣଇଁ କହ ପ୍ରଭୁ ମୋତେ ବତାଇ। ଆହେ ଅଲେଖ। ଗୁରୁଙ୍କର କୋଟା ମୁଁ ସିନା, ପିଣ୍ଡ ପ୍ରାଣଦେଇ ପ୍ରଭୁ ଶ୍ରୀଛାମୁରେ ପୂର୍ବାଦିରୁ ଅଟେ ମୁଁ କିଣା ।।୧୦।।

ଟିକେ ଟିକେ ହୋଇ ପ୍ରକାଶ ହୋଇଛି ଟାଣ ଶୂନ୍ୟ ପ୍ରଭୁ ବୁଝିବ, ଟିଆ କଣ୍ଟ ହେଲେ ମୋର କି ଯାଉଛି ଶୁଭ ଅନୁକୂଳ ଖୋଜିବ। ଆହେ ଅଲେଖ। ଅପରାଧି କରି ନ ମାର। ଅଜ୍ଞାନ ଜୀବ ମୁଁ ଜ୍ଞାନ ବୁଦ୍ଧି ନାହିଁ କୃପାକରି ମୋତେ ଉଦ୍ଧର ।।୧୧।।

ଠିକଣା କହୁଛି ଠକ ପଣ କରି ବଢ଼ି ଯାଉଛି ମୋର ମନ, ଠାକୁରଙ୍କ ଆଗେ ଠିଆ ହେବା ମାତ୍ରେ ଲାଗିଗଲାଣି ଦୋଷମାନ। ଆହେ ଅଲେଖ। ଠିକେ କହେ ଭୀମ ଅର୍କ୍ଷୀତ। ଶୂନ୍ୟ ବ୍ରହ୍ମସ୍ୱାମୀ ଅନ୍ତର୍ଯ୍ୟାମୀ ଅଟ ଜାଣିବ ଆଗତ ନିଗତ ।।୧୨।।

ଡୋଳେ ଦେଖୁ ଦେଖୁ ଦଣ୍ଡ ଦିଆଉଛ ଲାଗିଗଲାଣି ଦାଉ ଦଫା। ଶୂନ୍ୟବ୍ରହ୍ମ ପ୍ରଭୁ ଯାହା ବିଚାରୁଛ ଲାଗୁଅଛି ମତେ ତାଟକା। ଆହେ ଅଲେଖ। ଅବନା ମନ୍ଦିରେ ବସିଛ। ତୋର ସବୁ ଅଟେ ମୋର କିଛି ନାହିଁ ଦ୍ରୋହ କରି ମୋତେ ମାରୁଛ ।।୧୩।।

ଢାଙ୍କୁଣିକି ଫେଡ଼ି ଢାଳ ବାନାଠାରେ କରାଉଛ ମନ୍ଦ କରମ। ଢାଉରଙ୍ଗେ ପଡ଼ି ଢୁକିପିଇ ଦେଲେ, ନାଶ ହୋଇବ ଅବା ଧର୍ମ। ଆହେ ଅଲେଖ, ଅଦଭୂତ କଥା ହେଉଛି। ଯେଣୁ ମୋର ଗୁରୁ ମନୁଷ୍ୟ ନୁହଁନ୍ତି, ତେଣୁ ଛାମୁରେ କହୁଅଛି ।।୧୪।।

ଅନାଦି ପ୍ରଭୁଙ୍କୁ ଆଶ୍ରେ କରିବାରୁ ହେଉଛି କି; ଅନନ୍ତମାୟା। ଅଣ ଅକ୍ଷରରେ ଦୋଷୀକରି ମତେ କିବା ଖଣ୍ଡିବ ମୋର କାୟା। ଆହେ ଅଲେଖ। ଅବ୍ୟକତ ପ୍ରଭୁ ଜାଣିବ। ଅନ୍ତରାତ୍ମାରେ ମୁଁ ଯାହା ଜଣାଉଛି ମୋ ବିନତୀ ବାରେ ଘେନିବ ।।୧୫।।

ତରସ୍ତ କରାଇ ତ୍ରଲକ୍ୟ ଚିନ୍ତାମଣି ପାଦରେ ବା ଦ୍ରୋହ କରିଛି । କେଡ଼େ ଶକ୍ତ ବୁଦ୍ଧି ଭକ୍ତ ଅଟେ ବୋଲି ତେଜ କଲା ଅବା ହରୁଛି । ଆହେ ଅଲେଖ । ଆଶ୍ଚର୍ଯ୍ୟ ମଣୁଛି ଏ କଥା । ଏ ପିଣ୍ଡ ପରାଣ ଦାନ ହୋଇଅଛି ଜାଣିବ ଅଲେଖ କରତା ॥୧୬॥

ସ୍ଥିତି ଦେବି ବୋଲି ଧରି ଅଛ ମତେ ଥଳେଦେବ ଅବା ଭସାଇ । ସ୍ଥବିର ଚିତ୍ତକୁ ଉଚ୍ଚାଟ କରାଇ ନେଉଛ ବା ମନ କଷାଇ । ଆହେ ଅଲେଖ । ମୋହର କି ଅଛି ଆୟତ୍ତ । ଯହିଁ ବିକିଲେ ଏ ଜୀବ ବିକା ଯିବ ପ୍ରଭୁଙ୍କର ସିନା ମହତ୍ୱ ॥୧୭॥

ଦୟାଳୁ ପୁରୁଷ ପାଦପଦ୍ମେ ମତେ ଦ୍ରୋହ ମେଳଛ କରାଉଛ । ଦାସ ଦାସୀ ନାମ ପଦଦେଲେ ଅବା ଆନନ୍ଦ ହୋଇବ ବଲୁଛ । ଆହେ ଅଲେଖ । ଡରିମରି ଅଛୁପ୍ରାଣରେ । ନ ବିଚାରି ଯେବେ କର୍ମକୁ କରିବି କି ବୋଲି କହିବି ଛାମୁରେ ॥୧୮॥

ଧର୍ମପୁରୁଷ ପୟରେ ଅପରାଧ କରାଉଅଛ ଶତେବାର । ଧରଣୀ ମଣ୍ଡଳୁକରିଦେବ ଅବା ଛପ୍ନାକୋଟି ଜୀବୁ ବାହାର । ଆହେ ଅଲେଖ । ପ୍ରଭୁ କୋପକୁ ମୋର ଭୟ । ଯହିଁ ପକାଇଲେ ପଡ଼ିବ ଏ ଜୀବ କରି ଯେମନ୍ତେ ଅଛ ପୁଅ ॥୧୯॥

ନନ୍ଦ ଅବଧୂତ ଦୀକ୍ଷା ଧର୍ମେ ମତେ କରାଉଅଛ ଦୋଷକାରୀ, ଯୋଗ ଭୋଗ ସୁଖ ପାଇଲେ ଭଗତ ମନୁଅବା ଦେବେ ପାସୋରି । ଆହେ ଅଲେଖ । ଯାହାକଲେ ଅଛି ହାଜର । କାଳବେଳ ଯହୁଁ ନିକଟ ହୋଇଲା । ପକାଉଛି ତେଣୁ ଇଝାର ॥୨୦॥

ପୂର୍ଣ୍ଣ ବ୍ରହ୍ମରେ ଭକ୍ତି କରାଇ ଉଣା କରିବାକୁ ବସୁଛ । ପ୍ରୀୟବତୀ ହେଲେ ପ୍ରୀତି ଛାଡ଼ିଦେବ କି ଅବା ମୋ ମନ କଷୁଛ । ଆହେ ଅଲେଖ । ପ୍ରଭୁଙ୍କର ସିନା ଏ ଜୀବ । ପୂର୍ଣ୍ଣବ୍ରହ୍ମ ବିନୁଆନେ ନ ଯୋଗାଉ ଚାରିଯୁଗରେ ସେବାଥିବ ॥୨୧॥

ଫନ୍ଦା ଦେଖି ଫୁଲାପଣ ହେବବୋଲି ଫିଟାଇ ଅଛ ପୂର୍ବ କଥା । ଲାଭହାନୀ ଯେତେ ଏ ବେନି ମତକୁ ଗୁରୁସିନା ଅଟ ସକତା । ଆହେ ଅଲେଖ । କରୁଛ ଅପୂର୍ବ ବିଧାନ । ପାଷାଣରେ ପଦ୍ମଫୁଲ ଫୁଟାଉଛ ପଶ୍ଚିମେ ରବି ଉଦ୍ୟମାନ ॥୨୨॥

ବ୍ରହ୍ମାଣ୍ଡ ଧାରଣ ଶ୍ରୀଛାମୁରେ ମତେ କରିଛ ନିମକ ହାରାମ । ବ୍ରହ୍ମ ପରିଚାରେ ଜିଣିଗଲା ବୋଲି ମାୟା ଦେଖାଉଛ ଅଗମ୍ୟ । ଆହେ ଅଲେଖ । ଗୁରୁ ଆଜ୍ଞା ସିନା ଗରିଷ୍ଠ । ଦୋଷ ଅପରାଧ କ୍ଷମାକର ବୋଲି ଜଣାଉଛି ମୁଢ଼ ପାପିଷ୍ଠ ॥୨୩॥

ଭୂତ ଭବିଷ୍ୟାନ୍ତ ବର୍ତ୍ତମାନ କଥା ଶୁଣିଲି ସୁଜନ ମୁଖରେ। ଭାରି ହେଲା ଯହୁଁ ଶିର ପରେ ମୋର ସଂଶୟ ମୁ କଲି ମନରେ। ଆହେ ଅଲେଖ। ଭାବି କହେ ଭୀମ ଅର୍କ୍ଷିତ। ଅଶେଷ ଭୁବନେ ଅଲେଖ ମହିମା ଯାହା ବିଚାରୁଛ ଉଚିତ ॥୨୪॥

ମାତୃଗଣ କୋଳେ ଅପରାଧି ମୋତେ କାହିଁକି ଏ ମାନ କରୁଛ ମାୟାକୁ ଭିଆଇ ମାରିବାକୁ ଅବା ବଢ଼ାଇ ମନକୁ ତ୍ୟାରିଛ। ଆହେ ଅଲେଖ। ମୋହର କିଛି ଦୋଷ ନାହିଁ। ଅବନା ମନ୍ଦିରେ ଆସିବା ବେଳରେ ପୂର୍ବକାଳରୁ ଅଛ କହି ॥୨୫॥

ଜୀବ ଆତ୍ମା ଗୋଟି ନର ନାରାୟଣ କାହିଁକି ହିଂସା କରାଉଛ। ଆତ୍ମା ଲିଙ୍ଗରେ ଅପରାଧି କରାଇ ହୃଦେ ଅହନ୍ତା ଧରାଉଛ। ଆହେ ଅଲେଖ। ଅଗୋଚର ନ୍ୟାୟେ ହେଉଛି। ଅରୂପ ପୁରୁଷ ସବୁକରି ପାର ମନକୁ ଯେମନ୍ତେ ଆସୁଛି ॥୨୬॥

ଋଷିଗଣ ସଙ୍ଗେ ବାଦି କରାଉଛ ନାନା ନଟକୁଟ ଲଗାଇ। ତାକକୁ ଧରାଇ ମୂଳ ଛେଦୁଅଛ ଉଚ୍ଚ ବୃକ୍ଷେ ଅଛ ଚଢ଼ାଇ। ଆହେ ଅଲେଖ। ତୁମରି ନଟ କୁଟ ସବୁ। ନର ଅଙ୍ଗେ ମୁଁହି ଥିବା ପରିଯନ୍ତେ ଅପ୍ରାଧି ନାହିଁ କର ପ୍ରଭୁ ॥୨୭॥

ଲାବଣ୍ୟ ମୂରତି ପ୍ରଭୁ ଶ୍ରୀଚରଣେ ଅବିଶ୍ୱାସିତ ହେଉଅଛି। ଲଙ୍ଘିଗଲେ ଧର୍ମ ଅପରାଧି ହୁ୍ୟନ୍ତି ପ୍ରତକ୍ଷରେ ଜୀବ ଜାଣୁଛି। ଆହେ ଅଲେଖ। ଯାହାକରି ଅଛ ରଞ୍ଜନ। ନବଖଣ୍ଡ ସୃଷ୍ଟି ପ୍ରଳୟ ହୋଇଲେ ମିଥ୍ୟା ନୁହେଁ ଗୁରୁ ବଚନ ॥୨୮॥

ବେଦ ଶାହାସ୍ତରେ ବଡ଼ିମା କରାଇ ତିନିପୁରେ ଦୋଷୀ ହୋଇଛି ବ୍ରହ୍ମାଣ୍ଡ ଠାକୁର ନିବାରିବେ ବୋଲି ତେଣୁ କରିସିନା କହୁଛି। ଆହେ ଅଲେଖ। କାହିଁ ମୋର ନିଜ ଶକତି। ସଂସାର ସାଗରେ ବୋଧ କରିବାକୁ ନୁହଇଁ ମୁଁ ତେଡ଼େ ବ୍ୟକତି ॥୨୯॥

ଶରଣ ନ ଯାଇ ଗରବିତା ହେଲି ଶିରୋମଣି ଗୁରୁ ପୟରେ, ସର୍ବଠାରେ ମୁଁ ହିଁ ଦୋଷକାରି ହେଲି ସାହା କେହି ନାହିଁ ସଙ୍ଗରେ। ଆହେ ଅଲେଖ। ଅନାସ୍ତ ପରାଣି ଅଟଇ। ଅନେକ ପ୍ରଭୁଙ୍କୁ ନ ଜାଣଇଁ ମୁଁହିଁ ଏକା ଅଲେଖଙ୍କୁ ଖଟଇ ॥୩୦॥

ସୁଜ୍ଞ ସାଧୁଜନ ଶ୍ରୀଚରଣେମତେ କରାଉଅଛ ଦ୍ରୋହକାରି। ବୈଷ୍ଣବ ନୋହିଲି ଗୃହୀ ନ ହୋଇଲି ରଖିଲ ମତେ ମଧ୍ୟ କରି। ଆହେ ଅଲେଖ। କଉ କାର୍ଯ୍ୟ ଅଛି ଏଥିରେ। ମଧ୍ୟେ ଏ ଜୀବକୁ ଝୁଲାଇ ମାରୁଛ କି ନ୍ୟାୟ କରିବ ଆଗରେ ॥୩୧॥

ସତ୍ୟାଦି ବଚନେ ଦୋଷି ନିତି ପ୍ରତି ଯତି ସତୀଙ୍କର ଆଗରେ। ସଦା ନିଜ ବ୍ରହ୍ମେ ଦୋଷି କରିବାରୁ ନ ଗଛୁ ଅଛନ୍ତି ସଙ୍ଗରେ। ଆହେ ଅଲେଖ। ଅସମ୍ଭବ କଥା କରୁଛ। ଚଉଦ ବ୍ରହ୍ମାଣ୍ଡ ନବଖଣ୍ଡ ମହୀ କୀଟ ଜୀବ ଅଙ୍ଗେ ଫେରୁଛ ॥୩୨॥

ହରିହର ବ୍ରହ୍ମା ଏ ତିନିଙ୍କଠାରେ ଆଦ୍ୟନ୍ତରୁ ଦୋଷି ହୋଇଛି। ଅଲେଖ ଆଜ୍ଞାରେ ତିନି ଭୁବନରୁ ବ୍ରହ୍ମବାକ୍ୟ ଫିଙ୍ଗି ଦେଇଛି। ଆହେ ଅଲେଖ। ଏକା ବେନି କଥା ରହିଛି। ଅଲେଖ ମହିମା ଦୁଇ କଥା ମିଶି ତିନିପୁରେ ଜାରି ହୋଇଛି ॥୩୩॥

କ୍ଷମାଦି ସାଗର ଅଲେଖ ପୁରୁଷ ମୁଖେ ଆଜ୍ଞା ତାଙ୍କ ପଡ଼ିଛି। କ୍ଷିତିମଣ୍ଡଳରେ କେହି ନ ଜାଣନ୍ତି ଚାରି ଯୁଗ ସଂଖ୍ୟା ଛିଡୁଛି। ଆହେ ଅଲେଖ। କ୍ଷମେ ଉଣେ ଭୀମ ଅର୍କ୍ଷିତ। ଗୁରୁ ଆଜ୍ଞା ସତ୍ୟ ମହିମା ବିଖ୍ୟାତ ରୁହୁଏ ଅଷେଶ ଜଗତ ॥୩୪॥

## ଦ୍ୱିତୀୟ ଚଉତିଶା

କ୍ଷତି ମଣ୍ଡଳରେ କ୍ଷୀଣ ଅବତାରେ ବିଜୟେ ଅଲେଖ ପୁରୁଷ। ବୃଦ୍ଧ ଅଙ୍ଗେ ପ୍ରଭୁ ଗୁପତେ ବିହରୀ ଅଶେଷ ମହିମା ପ୍ରକାଶ। ଆହେ ଅଲେଖ। କରିଅଛ ଯେବେ ଭିଆଣ। ଶୂନ୍ୟାଧି ପୁରୁଷ ବୁଝାମଣା କର କିପାଇଁ ବିହୁଛ କଷଣ ॥୩୫॥

ହିତକାରି ପ୍ରଭୁ ହାନିଲାଭ କଥା ସଦୟେ ବୁଝିବେ ଆପଣ। ହରଣ ହେବାରୁ ଶ୍ରୀଛାମୁରେ ମୁହିଁ କରୁଛି ବହୁତ ଜଣାଣ। ଆହେ ଅଲେଖ। ସକଳ ଲାଗଇ ଗୁରୁଙ୍କୁ

ଅକୁଳ ସାଗରେ ଭାସିଯାଉଅଛି ଉଧରି ଲଗାଅ ତିରକୁ ॥୩୬॥

ସତ୍ୟ ଯେବେ ନାମ ଅଲେଖ ମହିମା ଶୂନ୍ୟ ସତ୍ୟ ପ୍ରଭୁ ରଖିବେ। ଶୂନ୍ୟ ପୁରୁଷ ଶକତ ବୁଝାମଣା ତିନି ଭୁବନରେ ଦେଖିବେ। ଆହେ ଅଲେଖ। କରିଛ ବ୍ରାହ୍ମାଣ୍ଡେ ବିଖ୍ୟାତ। ହେଳା କଲେ ସ୍ୱାମୀ ଭେଳା ବୁଡୁଅଛି ରକ୍ଷାକର ତୁମ୍ଭ ଭଗତ ॥୩୭॥

ସମ୍ଭାଳି ଉଦ୍ଧର ହେ ଶୂନ୍ୟ ପୁରୁଷ ସତୀପଣ ବୁଡିଯାଉଛି। ସ୍ୱାମୀ ସ୍ୱାମୀ ବୋଲି ସୁମରି ଡାକୁଛି, ତୁରିତେ ବୁଝିଲେ ହେଉଛି। ଆହେ ଅଲେଖ, ପ୍ରଭୁତ ଆରତ ଭଞ୍ଜନ। ଭାସି ଯାଉଅଛି ତ୍ରାହି ତ୍ରାହି ସ୍ୱାମୀ ଭୃତ୍ୟ ବୀନତି ବାରେ ଘେନ ॥୩୮॥

ଶ୍ରୁତିପଥରେ ମୁଁ କିସ ଜଣାଇବି ଯାହାର ନାହିଁ ରୂପରେଖ। ସୁର ଅସୁର ଜଞ୍ଜାଳରୁ ବଞ୍ଚାଇ ଶନ୍ୟ ପୁରୁଷ ରଖ ରଖ। ଆହେ ଅଲେଖ। କହୁଅଛି ଭୀମ ଅର୍କ୍ଷିତ। ଗୁରୁପାଦଗୋଟି ମିଥ୍ୟା କେ ବୋଲିବ ମୁ ସିନା ଅଟଇ ଅସତ୍ୟ ॥୩୯॥

ବାଚା ବିଚଳ ଜଣେ ଜଣେ ହେଲେଣି ବାଦି ଲାଗିଛି କୁଟୁମ୍ବରେ। ବ୍ରହ୍ମାଣ୍ଡକରତା ସାବଧାନେ ବୁଝ ଗୁହାରି କରୁଛି ଆଗରେ। ଆହେ ଅଲେଖ। ଆତଙ୍ଗ ଫେଡ଼ଣ ଯାବାନା। ଅନ୍ତର୍ଯ୍ୟାମୀ ପ୍ରଭୁ କି କଥା ନ ଜାଣ ଭୃତ୍ୟ ଭୟକୁ ବଜ୍ର ସେହ୍ନା ॥୪୦॥

ଲାବର ପଣ ପ୍ରକୃତି ବୁଧି କରି ଲଙ୍ଘି ଯାଉଛନ୍ତି ଧର୍ମକୁ। ଲକ୍ଷଣ ଆଚାର ମାନ ରହୁ ନାହିଁ ଜଣାଉଛି ତେଣୁ ପ୍ରଭୁଙ୍କୁ। ଆହେ ଅଲେଖ। ଅନ୍ୟାୟ ହେଲାଣି ବହୁତ। ଗୁରୁ ବଚନକୁ ଟାକିଅଛି ଜୀବ କିସ ବିଚାରୁଛ କହତ ॥୪୧॥

ରସାମେଦିନିରେ ନର ଅଙ୍ଗେ ପ୍ରଭୁ କରିଅଛ ମୋତେ ଜନମ। ହଟହଟା କଥା ଦେଖି ଶୁଣି ମତେ ମାଡୁଅଛି ଲଜ୍ଜା ସରମ। ଆହେ ଅଲେଖ। ଅଭୟ ପଞ୍ଜର ଯାପାଦ। ତେଡ଼େ ପ୍ରଭୁଙ୍କୁ ଆଶ୍ରେ କରିଥାଉ ପଡୁଅଛି ଏଡ଼େ ପ୍ରମାଦ ॥୪୨॥

ଯୁଗ ପୁରୁଷଙ୍କ ଯୁଗଳ ଭଙ୍ଗାଉଛି ବିଚ୍ଛେଦ କରିଛି ନୀୟତ। ଯୁବତି ରତନ ଜୀବନ ଗଲାଣି ମହାପ୍ରଭୁ ବାରେ ଦେଖତ। ଆହେ ଅଲେଖ। ଭଗତଙ୍କ ଧନ ଜୀବନ। ଏ କଳି ଜଞ୍ଜାଳ ଘୋଡ଼ାଇଛି ଜାଲ ପକାଇଛି ପ୍ରଭୁ ବନ୍ଧନ ॥୪୩॥

ମହିମା ସାଗର ଏ ମହୀରେ ମତେ କଳିଯୁଗେ ଛାଡ଼ିଦେଇଛ। ଅଜ୍ଞାନ ଆଚାର ଏ ମାନବ ନର ହସ୍ତରେ ମହତ୍ୱ ନେଉଛ। ଆହେ ଅଲେଖ। ଫେଡ଼ି କହେ ଭୀମ ଅର୍କ୍ଷିତ। ଅନ୍ତର୍ଯ୍ୟାମୀ ପ୍ରଭୁ ଅନ୍ତରେ ଜାଣିବ ହେଉଛି ଯେତେ ଯେତେ କୃତ ॥୪୪॥

ଭାରିଜା ପରାୟେ କରି କଳିଯୁଗ ହସ୍ତଧରି ଘିଞ୍ଚି ନେଉଛି। ଦାଣ୍ଡବାଟ ଯାକ ଦେଖୁଛନ୍ତି ଲୋକେ ଅନେକ କଷଣ ଦେଉଛି। ଆହେ ଅଲେଖ। ଅନ୍ତର୍ଯ୍ୟାମୀ ପରା କରତା। ଭୂଞ୍ଜିଲା ଯୋଗାଡ଼ ହରି ନେଉଛନ୍ତି ହଉଛନ୍ତି ମତେ ବିଧାତା ॥୪୫॥

ବ୍ରହ୍ମାଣ୍ଡ ଭୀତରେ ବାତୁଳ ପରାୟେ ପାଞ୍ଚିଲେଣି ବୁଦ୍ଧି ଅନେକ। ବିଚାରଣ କର ହେ ଶୂନ୍ୟ ପୁରୁଷ ସତ୍ୟେ ଲାଗିଲାଣି କଳଙ୍କ ॥ ଆହେ ଅଲେଖ। ଯେବେ ଭଗତ ହିତକାରି। ଦାସ ଦାସୀ କଥା ନ କରୁଛ ଚିନ୍ତା ମନୁ ଦେଉଛ କି ପାସୋରି ॥୪୬॥

ଫିଟାଇ କହୁଛି ନକରି ଗୁପତ ବାସ ଫେଡ଼ିନେଲେ ମହତ। ତେଣୁକରି ଗୁରୁ ଛାମୁରେ କହୁଛି ନ ଦିଶିଲା ଯେଣୁ ବିହିତ। ଆହେ ଅଲେଖ। କରିଅଛ ଏବେ କେମନ୍ତ। କାଳ ବିପତିକି ଅନ୍ୟାୟ ରିତିକି ଚାରିବେଦ ସିନା ସାମର୍ଥ ॥୪୭॥

ପୂର୍ଣ୍ଣାନନ୍ଦ ସ୍ୱାମୀ ପ୍ରତ୍ୟକ୍ଷରେ ଦେଖ ପ୍ରଳୟ ହେଉଛି ଏ ଯୁଗ । ମାନବ ଶକତି ଅଳପ ଭଗତି କରି ବୋହିଛନ୍ତି ଗରବ । ଆହେ ଅଲେଖ । ମୋହର କିଛି ଦୋଷ ନାହିଁ । ହଟହଟା କଥା ପରପଞ୍ଚ ବୁଡା ପ୍ରଭୁ ସିନା ଅଛ ଭିଆଇ ॥୪୮॥

ନବଖଣ୍ଡ ପୃଥୀ କଳି ଉତପତି ମଲୁଆ ପରାଏ ହେଲାଣି । ମିଥ୍ୟା ନାହିଁ ପ୍ରଭୁ ସତ୍ୟ କହୁଅଛି, ମାତାକୁ ମାଇପ କଲେଣି । ଆହେ ଅଲେଖ । ଏଡ଼େ ପ୍ରଭୁଥାଇ ବିଫଳ ଅଭୟ ବ୍ରହ୍ମରେ ସେବା ଯଗୀ ଯଗୀ ନାଶ ହୋଇଲାଣି ସକଳ ॥୪୯॥

ଧରଣୀ ମଣ୍ଡଳେ ଧର୍ମ ପୁରୁଷଙ୍କୁ କେତେ ମୁଁ ଡାକିବି ଉଛରେ । ମୋର ମୋର ବୋଲି ମୁକାର ମୁଁ ବହି ଆତୁର ହେଉଛି ମିଛରେ । ଆହେ ଅଲେଖ । ମୋ ପ୍ରଭୁ ଯେବେ ବଳବନ୍ତ । ଦତ୍ୟ ଦାନବରୁ ଛଡ଼ାଇ ଆଣିବେ ଆପେ ରଖିବେ ଆପ ସତ୍ୟ ॥୫୦॥

ଦୁର୍ଦ୍ଦଶା ଦଣ୍ଡ ଛେଦହେ ଖଣ୍ଡଖଣ୍ଡ ଆହେ ଦୟାବନ୍ତ ପୁରୁଷ । ଦୁଃଖି ଜନବନ୍ଧୁ ଅଟ ପରାପ୍ରଭୁ ଅଭୟ କରୁଣା ପ୍ରକାଶ । ଆହେ ଅଲେଖ । କେତେ ଜଣାଇବି ଛାମୁରେ । ଏକାବେଳେ ଏକାଥରେ ସମର୍ପିଛି ପିଣ୍ଡପ୍ରାଣ ପ୍ରଭୁ ଛାମୁରେ ॥୫୧॥

ଥରଥର ହୋଇ ଥରୁଅଛି ଅଙ୍ଗ ଅର୍ଧମରଣେ ପଞ୍ଚୁଭୂତ । ଥାଇ ଥାଇ କରି ଗୁରୁଦେବ ସ୍ୱାମୀ ହେଉଅଛି ଏତେ ଅନର୍ଥ । ଆହେ ଅଲେଖ । ଅଭୟସେବା ଅନୁସରି । ପ୍ରଭୁଙ୍କୁ ବିପତି ଅଧିକ ହେଲାକି ମଥାରେ ପଡୁଅଛି ଗିରି ॥୫୨॥

ତିନି ତ୍ରଲକ୍ୟରେ କରତା ବିଜୟେ କରିଅଛ ସର୍ବଭୂତରେ । ତିଳମାତ୍ର କିଛି କାମ ନୋହିପାରେ ପ୍ରଭୁ ନାହିଁ ଯେଉଁ ଠାବରେ । ଆହେ ଅଲେଖ । ତୀରଣ ଧରି ମୁଁ ଦନ୍ତରେ । ଗଳାରେ ବସନ ବିନୟ ଭାବେଣ ଦୁଃଖ ଜଣାଉଛି ଛାମୁରେ ॥୫୩॥

ଅନାଦିପୁରୁଷ ଅଣ ଅଗୋଚରେ ଥୋଇଥିଲ ଏତେ ଦିବସ । ଆଗତକାଳରୁ ଖଞ୍ଜା ପାତି ରଖି ଏବେ କରିଅଛ ପ୍ରକାଶ । ଆହେ ଅଲେଖ । ଆଣି ନେଇ ଥୋଇ ନୋହୁଛି । ଅଲେଖ ପୁରୁଷ ଆପେ ନ ଲୋଡ଼ିଲେ ବହୁତ ଅନର୍ଥ ହେଉଛି ॥୫୪॥

ଢୁକି ଆସୁଅଛି ଶୁଭ ଲଗ୍ନ ଯହୁଁ ଧାଡ଼ି ପଡୁଅଛି ବହୁତ । ଢାଙ୍କୁଣି ମୁଦକୁ ନିବନ୍ଧରେ ଦେଇ ରଖ ରଖ ତୁମ୍ଭ ମହତ୍ୱ । ଆହେ ଅଲେଖ । ଢାଲ ବୀରବାନା ଘୋଡ଼ାଅ । ଅଲେଖ ପୁରୁଷ ଆପେ ବିଜେ ହୋଇ ପ୍ରଭୁ ଯଶ ବାନା ଉଡ଼ାଅ ॥୫୫।

ଡକାଇତ ପ୍ରାୟେ ଏ କଳିପୁରୁଷ ଦାଣ୍ଡେ ବାଟେ ହଟା କଲାଣି । ଦାସ ଦାସି ତୁମ୍ଭ ଡରି ଯାଉଛନ୍ତି ଯେତେ ଏ କଷଣ ଦେଲାଣି । ଆହେ ଅଲେଖ । ଡାକି କହେ ଭୀମ ଅର୍କ୍ଷିତ । ହାନିଲାଭ କଥା ଯେତେକ ହେଉଛି ଶ୍ରୀଗୁରୁଙ୍କୁ ସବୁ ଲାଗେତ ॥୫୬॥

ଠକପଣ କରି ପାପ କଳିଯୁଗ ଠାରି ହସ୍ତ ଧରି ନେଉଛି । ଉଦେ ହେଲା ସତ୍ୟ ଧର୍ମରେ ବିଦିତ ଫେରିବା ହରଣ ହେଉଛି । ଆହେ ଅଲେଖ । ଠିଆହୋଇ ଠାରି କହୁଛି । ହେଳା କଲେ ସ୍ୱାମୀ ଭେଳା ବୁଡୁଅଛି କେତେବେଳେ ଆଜ୍ଞା ପଡୁଛି ॥୫୭॥

ଟାଣ ପ୍ରଭୁବୋଲି ଜଣାଣ କରୁଛି ଅନ୍ୟେ ନାହିଁ ମୋର ଭରସା, ଦିବସ ରଜନୀ ଅନୁସରି ଅଛି, ଜେହ୍ନେ ଚାତକ ଜଳେ ଆଶା ॥ ଆହେ ଅଲେଖ । ଟାଣ ଶ୍ରୀଗୁରୁ ବୀର ବର । ଲାଭ ହାନିକଥା ଯେତେ ହେଉଅଛି ଶୂନ୍ୟପୁରୁଷ କ୍ଷମା କର ॥୫୮॥

ନାଶ ହେଉଅଛି ଏ ପିଣ୍ଡ ବ୍ରହ୍ମାଣ୍ଡ ସଂସାର ଅସତ୍ୟ ପାପରେ । ନାରାୟଣ ପ୍ରଭୁ ମତେ ଯେ କହିବ ମୋର କେଉଁ ଦୋଷ ଏଥିରେ । ଆହେ ଅଲେଖ । ନାମ ଦେଲି ଯେତେ ପ୍ରକାରେ । ଜାଣି ବୁଝି ସର୍ବେ ଅକାରଣ ହେଲେ କେହି ନ ଘେନିଲେ ସଂସାରେ ॥୫୯॥

ଝର ଝର ନେତ୍ର ନୀର ବୋହୁଅଛି, ଝଡ଼ିପଡୁ ଅଛି ଭରସା । ଝଟତିରେ ପ୍ରଭୁ ବୁଝାମଣାକର ନ ପାଉଛି ମୋର ସାହସା । ଆହେ ଅଲେଖ । ଝେଞ୍ଜାକା ପଡୁଛି ବହୁତ । ଝଗଡ଼ା ଭିତରୁ ତ୍ରାହି କରିବାକୁ ଗୁରୁଦେବ ସିନା ସମାର୍ଥ ॥୬୦॥

ଜଗତ କାରଣେ ଶ୍ରୀଛାମୁରେ ମୁହିଁ କରୁଛି ଜଣାଣ ବିନତି । ଯୋଗୀନ୍ଦ୍ର ପୁରୁଷ ଅନ୍ତର୍ଗତେ ଜାଣି ଘେନଘେନ ମୋର ଭଗତି । ଆହେ ଅଲେଖ । ଯାଗ୍ରତରେ ବୁଝ ଆପଣ । ଅଲେଖ ପୁରୁଷ ଶ୍ରୀଗୁରୁ ବ୍ୟତିତ ଅନ୍ୟେ ନାହିଁ ମୋର ସ୍ମରଣ ॥୬୧॥

ଛନ ଛନ ହୋଇ ଛଡ଼ ବେଦପରେ ଲୟ ଲଗାଇଚି ଗୁରୁଙ୍କୁ । ଛାଣିନେଇ ମୋତେ ଅକୁଳ ସାଗରୁ ଉଦ୍ଧିର ଲଗାଅ ତୀରକୁ । ଆହେ ଅଲେଖ । ଛନ୍ଦେ ପଡ଼ିଅଛି ଏ ଜୀବ । ମାୟା ଜାଲ ଛେଦି କରୁଣା ବାରିଧି ତ୍ରାହି କଲେ ସିନା ହୋଇବ ॥୬୨॥

ଚିନ୍ତାର୍ଥ ଜନ ଚିନ୍ତାମଣି ପୁରୁଷ ଚିରାନନ୍ଦ ଗୁରୁ ସାମର୍ଥ । ଚିରକଥା ମାନି ହୋଇ ଅକାରଣ କାହିଁକି ହେଉଛି ଏମନ୍ତ । ଆହେ ଅଲେଖ । ଚାହିଁଅଛି ଅନ୍ତର୍ଯାମୀଙ୍କି । ସର୍ବକଥା ମୋର ବୁଝି ଦେବେ ବୋଲି ଧାୟୀ ଗୁରୁଦେବ ସ୍ୱାମୀଙ୍କି ॥୬୩॥

ଅନାଦି ପୁରୁଷ ଜାଣି ଜାଣି କରି ଅଡୁଆ କରୁଛ କାହିଁକି । ଅନନ୍ତପୁରୁଷ ନ ଜାଣିକି ପ୍ରଭୁ ଭିଆଣ କରିଛ ଯହିଁକି । ଆହେ ଅଲେଖ । ଉଇଁ ଥିଲା ପ୍ରାତଃ ଅରୁଣ । ଘୋର କଳିଯୁଗେ ଅସ୍ତ ହେଲା ପ୍ରାୟେ ଦିଶୁଅଛି ସ୍ୱାମୀ ଅବର୍ଣ୍ଣ ।।୬୪।।

ଘଡ଼ିକି ଘଡ଼ି ମୋ ହୃଦୟ ପଦ୍ମରେ ବିପତି ପଡୁଛି ଅପାର । ଘେନ ମୋ ବିନତୀ ଅନ୍ତର୍ଯ୍ୟାମୀ ଗୁରୁ କାଳ ବିପତ୍ତିକୁ ନିବାର । ଆହେ ଅଲେଖ । ଘୋଟି ଯାଉଅଛି ସନ୍ତାପ । ଘୋର କଳିଯୁଗେ ଯାତ କରି ମୋତେ କରାଉଛ ମନେ ବିଳାପ ।।୬୫।।

ଗୁରୁ ଦେବସ୍ୱାମୀ ଗିରି ବାନା ଥାଇ ଗର୍ଭ ପୋଡୁଅଛି ମୋହର । ଗତି ପତି କର୍ତ୍ତା ନ ବୁଝିବ ଯେବେ ହୋଇବି ମୁଁ ଆଉ କାହାର । ଆହେ ଅଲେଖ। ଗାରିଶାରି ହୋଇ ମରୁଛି । ଗରବ ଗଞ୍ଜନ ବାନା ଥାଉଥାଉ ଚିନ୍ତା ମୋରନାହିଁ ସରୁଛି ।।୬୬।।

ଖେଳ ଲୀଳା ଯେତେ କ୍ଷମାଦି ସାଗର ସାରି କରି କଲ ବିଜୟେ । ଖଳକୁଟ ପାଞ୍ଚି ଅନାଦି ପୁରୁଷ କରାଉଅଛ ମନେ ଭୟେ । ଆହେ ଅଲେଖ । କ୍ଷତିରେ ବଞ୍ଚିବି କେମନ୍ତେ । ଅନନ୍ତଙ୍କ ଲୀଳା କିପରି ହୋଇବ କେହି ନାହିଁ ମୋର ସଙ୍ଗତେ ।।୬୭।।

କଳିଯୁଗେ ମୋତେ ଜାତ କରିଅଛ ଅଲେଖ କରତା ପୁରୁଷ । କର୍ମ ଧର୍ମମାନ ସବୁଡୁବିଲାଣି କହିହେଉ ନାହିଁ ଭବିଷ୍ୟ । ଆହେ ଅଲେଖ । କହୁଅଛି ଭୀମ ଅର୍ଷିତ । କର୍ମଦେବ ସ୍ୱାମୀ ବିଜେ କରି ଥିଲେ ସର୍ବସିଦ୍ଧି ହେବ ପ୍ରପାତ ।।୬୮।।

## ତୃତୀୟ ଚଉତିଶା

କର୍ମକାଣ୍ଡ କଥାମାନ କରତା ପୁରୁଷ ଧନ କଲେ ଆଣି ଭେଟ ଗୋ । କହିଥିଲେ ଯାହା ପୂର୍ବେ କଳିକାଳ ଯୁଗେ ଏବେ କରିବେ ନିକଟ ଗୋ ।।୧।।

କ୍ଷିତୀ ମଣ୍ଡଳେ ପ୍ରକାଶ ଖିର ସିନ୍ଧୁ ପିତବାସ, ଖେଳ ଆରମ୍ଭିବେ ଗୋ ଖଳାର ଭୀତରେ ପସି ଖଟିଥିବେ ଦାସ ଦାସି ଖାଇପିଇ ସର୍ବେ ଗୋ ।।୨।।

ଗୁରୁଦେବସ୍ୱାମୀ ଦେଖ ଜ୍ଞାନ ମୂରତି ସ୍ୱରୂପ, ଗଢ଼ି ଆସ ଚଢ଼ି ଗୋ- ଗାଉଥିବ ଗୀତମାନ ଗତି ପ୍ରେମେ ଛନଛନ ଜ୍ଞାନଜଳେ ବୁଡ଼ିଗୋ ।।୩।।

ଘରଦ୍ୱାର ତେଜ୍ୟାକରି, ଘଟକୁ ଥାଅ ଆବୋରୀ ଘୋଷି ନାମ ଧୂନି ଗୋ- ଘୋର ମହାନିତ୍ୟେ ଜାଣ ଘେନି ସଙ୍ଗେ ଭକ୍ତଗଣ ଘୋଟିବେ ମେଦନୀ ଗୋ ।।୪।।

ଅନନ୍ତ ଖେତରେ ସର୍ବେ, ଅନୁକ୍ଷଣେ ମତଗର୍ବେ ଆନନ୍ଦିତଭୋଳେ ଗୋ-ଆୟ
ଅଳଙ୍କାରମାନ ଅଙ୍ଗରେ ହେବେ ଭୂଷଣ ଅନୁସରିଥିଲେ ଗୋ ।।୫।।

ଚାରୁଚନ୍ଦ୍ରମା ବଦନୀ ଚମତ୍କାର ବେଶ ଘନି, ଚର୍ମର ଦେହରେ ଗୋ- ଚରଣାରବିନ୍ଦେ
ସେବା ଚାରିଦ୍ୱାରେ ଲୀଳା ହେବା, ଚିତ୍ତଉନ୍ମାଦରେ ଗୋ ।।୬।।

ଛପ୍ପନକୋଟି ଜୀବ ସର୍ବେ ଛାମୁ ଆଜ୍ଞାରେ ରହିବେ, ଛନ୍ଦକୁଟ ନାଶି ଗୋ, ଛତ୍ରତଳେ
ବିଜେ ହରି ଛାୟାରେ ସମ୍ଭାଳ କରି ଛଡ଼ବେଦ ବାସି ଗୋ ।।୭।।

ଯୁବତୀ ରତନମାନ ରୂପଯୌବନେ ସମ୍ପୂର୍ଣ୍ଣ ଯୁବାଦେହ ଧରି ଗୋ, ଯୁଗ ତପ ଯାର
ଥିବା, ଯୋଡ଼ିଯୋଡ଼ି ହେବେ ଉଭା, ଜୟ ଶଙ୍ଖସ୍ତୁରୀ ଗୋ ।।୮।।

ଝଟକ ବିଜୁଳି ରୂପ ଝିମଟକେ ଯିବ ଦୁଃଖ, ଝାମେରି ନୃତ୍ୟର ଗୋ, ଝିନ ବସ୍ତ୍ର
ମାନ ପିନ୍ଧି ଝୁଡ଼ାପରେ ଗଭା ବାନ୍ଧି ଝିଣ୍ଟିବେ କର୍ପୂର ଗୋ ।।୯।।

ନିଷ୍କାମରେ ଯେହୁଥିବ, ନୃତ୍ୟ ମଣ୍ଡଳେ ପଶିବ, ନାମ ଗାୟନରେ ଗୋ ନାରୀମାନେ
ନିରନ୍ତରେ ନିତ୍ୟେ ଖଟିବେ ପାଦରେ ନିଶି ଦିବସରେ ଗୋ ।।୧୦।।

ଟିଆକୁ ଯେ ଟାକିଥିବ ଟାଣ ପଣକୁପାଇବ ଟଳି ନାହିଁ ଗଲେ ଗୋ- ଟିକାଏ
ସମ୍ଭାଳି ଥାଅ, ଟେକି ରଖି ନିଜ ଦେହ, ଟେଳା ପ୍ରାୟେ ବଳେ ଗୋ ।।୧୧।।

ଠାକୁର ବିଜୟେ ମଞ୍ଚେ ଠାକୁରାଣୀ ହେବ ନିଚେ, ଠିକକଥା ସତ ଗୋ- ଠାବ
ଜଗିଥାଅ ମାଏ ଠିଆହୋଇ ଠାରି କହେ ଭୀମ ଅରକ୍ଷିତ ଗୋ ।।୧୨।।

ଡାକି କହୁଅଛୁ ଆମ୍ଭେ ଡରୁଛ କାହାକୁ ତୁମ୍ଭେ ଡାଳକୁ ନ ଧର ଗୋ- ଡୋଳାର
ଗୋଚରେ ନିଚେ ପ୍ରଭୁଙ୍କର ତେଜ ମଞ୍ଚେ ଦାଣ୍ଡ ବାଟ ଘର ଗୋ ।।୧୩।।

ଢାଙ୍କୁଣୀ ଭିତରେ ଥାଅ ଢଳି ଭବକୁ ନ ଯାଅ, ଢାଳ ବାନା ତଳେ ଗୋ- ତମକୁ
ନ ଥିଲେ ମନ, ଢୁକି କରିବ ଆପ୍ୟାନ ଢାଳି ତେତେବେଳେ ଗୋ ।।୧୪।।

ଅଣଅକ୍ଷରକୁ ଧ୍ୟାଇ, ଅନୁକ୍ଷଣେ ଚିତ୍ତଦେଇ ଅନାଦିକି ଭଜ ଗୋ- ଅନନ୍ତ ସଙ୍ଗରେ
ଭାବ ଉନ୍ମାଦରେ କାଟଯିବ ଅନ୍ତର୍ଗତ ଲାଜ ଗୋ ।।୧୫।।

ସ୍ତୀରୀମାନେ ଅଛ ଜହିଁ, ଚାରୁଣ ରୂପକୁ ବହି ତର ତର ନୁହଁ ଗୋ - ତିନି
ତ୍ରିଲୋକ୍ୟ କରତା ତତ୍ତ୍ୱପାଇ ହୁଅଚେତା ତାକି ରଖ ଦେହ ଗୋ ।।୧୬।।

ଥିବ ଯେବେ ଥୟହୋଇ ସ୍ଥିତିକି ଲଭିବ ସେହି ସ୍ଥିରକର ମନଗୋ- ଥର ଥର ନୁହଁ
ଚିତ୍ତେ ଥୋଇଛନ୍ତି ଅବଧୂତେ ଥିଲା କେତେ ପୂଣ୍ୟ ॥୧୭॥

ଦରଶନ କରୁଥାଅ, ଦାଉରେ ସମ୍ଭାଳି ଦେହ, ଦୟା ହେବ ତେବେ ଗୋ- ଦାସୀ
ହେବ ସର୍ବ ନାରୀ ଦୁଃଖ ସନ୍ତାପରୁ ତରି ବହିଥିଲେ ପୂର୍ବେ ଗୋ ॥୧୮॥

ଧରିଥାଅ ଦୃଢ଼ବନ୍ଧେ ଧ୍ୟାନକରି ହୃଦ ମଧ୍ୟେ ଧରମ ପଥକୁ ଗୋ- ଧନ୍ୟ ସେ
ମହିମାସିଦ୍ଧି, ଧରଣୀ ମଧ୍ୟେ ଆଚ୍ଛାଦି ଧାରଣା ନିତ୍ୟକୁ ଗୋ ॥୧୯॥

ନବଖଣ୍ଡ ଏ ମେଦନୀ, ନାଚୁଥିବ ପୁରତିନି ନାମକୁତୁହଳେ ଗୋ- ନବିନ ଯୁବତୀ
ନାରୀ ନେତ୍ର କୁରଙ୍ଗି କୁମାରୀ ନୀଳାରସ ଭୋଳେ ଗୋ ॥୨୦॥

ପାପ ଘୋର କଳିଯୁଗ, ପିଣ୍ଡେ ପ୍ରାଣ ରଖିଥିବ ପରମ ପାଦରେ ଗୋ- ପାଇବ
ସକଳ ସିଦ୍ଧି ପୁଣ୍ୟବଳେ ରତ୍ନନିଧି ପ୍ରୀତି ଆମୋଦରେ ଗୋ ॥୨୧॥

ଫୁଟିଲାନି ଆସି କଥା, ପେଡ଼ିଦେଲେନି କରତା ଫୁରୁଣା ମାତର ଗୋ- ଫୁଲ
ମଧ୍ୟେ ଫଳ ପାଚି ଫନ୍ଦାକୁ ଦେଲେଣି ସଞ୍ଚି ଫଟିବ ଏଥର ଗୋ ॥୨୨॥

ବାଉନ ପାଟ ଜାତିରେ ବିଦିତ୍ୟ ହୋଇ ସଂସାରେ ବେଦାନ୍ତରେ ଅଛ ଗୋ-
ବାରିନେଇଯିବେ ସବୁ, ବ୍ରହ୍ମାଣ୍ଡ କରତା ପ୍ରଭୁ ବାକ୍ୟନୋହେ ମିଛ ଗୋ ॥୨୩॥

ଭରସି ପାରିଲେ ଦେଖ, ଭାବରେ ବଶ୍ୟ ଅଲେଖ, ଭାଷାପର ବନ୍ଧେ ଗୋ- ଭୀମ
ଅରକ୍ଷିତ କହି ଭାବଭକ୍ତି ସବୁଦେଇ ଗୁରୁପାଦବିନ୍ଦ ଗୋ ॥୨୪॥

ମହିମାକୁ ଅନୁକ୍ଷଣେ ଭଜୁଥାଅ ମନେମନେ, ମାନି ସେବାକର ଗୋ- ମହୀମଣ୍ଡଳରେ
ବିଜେ ମୁନିମାନେ ଭୂମିଶେଜେ, ମିଥ୍ୟାକରି ଦୁର ଗୋ ॥୨୫॥

ଯେତେ ଦୁରାନ୍ତକୁ କଥା ଯୋଖି ଅଛନ୍ତି କରତା, ଜାଣିବେ ସେ କାହିଁ ଗୋ-
ଯୋଗୀନ୍ଦ୍ର ଅଟନ୍ତି ଯେହୁ ଜାତକ ବୁଝିବେ ସେହୁ ଯୋଗଘରେ ଯାଇ ଗୋ ॥୨୬॥

ରହିଥାଅ ରାମାବରେ, ରସକୁ ସମ୍ଭାଳି ଧିରେ ରଖିଯେବେ ଥିବ ଗୋ- ରାଣୀପଣ
ପଦପାଇ ରାଜକନ୍ୟା ବେଶହୋଇ ରାହାସକୁ ଯିବ ଗୋ ॥୨୭॥

ଲାବଣ୍ୟ ମୂରତି ସର୍ବେ ଲେଖା ହୋଇଅଛ ପୂର୍ବେ ଲାଗି ସେବାକର ଗୋ- ଲଙ୍ଘି ନ
ଯାଅ ଧର୍ମକୁ ଲଭ ସାତ୍ତ୍ୱିକ କର୍ମକୁ ଲକ୍ଷଣ ଆଚାରେ ଗୋ ॥୨୮॥

ବୁଧିହେବ କବିତେଣୀ ବିଚାରଇ ପଣ୍ଡିତେଣୀ, ବିଦିତ୍ୟ ସଂସାରେ ଗୋ- ବିସମ
ହେଲାନି ଆସି ବ୍ରତିଥାଅ ଶୁଭ୍ରବେଶୀ, ବଚନକୁ ଧରଗୋ ।।୨୯।।

ସରିଲାଣି ସର୍ବ କଥା, ସ୍ୱର୍ଗ ଭୁବନ ଦେବତା, ସବୁ ଆସିଲେଣି ଗୋ- ସୁମାରି ହୁଅ
ସମସ୍ତେ ସର୍ବରୀ ନିଶିପାହାନ୍ତେ ସାରସ୍ୱତବାଣୀ ଗୋ ।।୩୦।।

ସୁକ୍ଷ୍ମ ଭଗତି ପାଇବ, ସତ୍ୟ ପୁରୁଷଙ୍କ ସଙ୍ଗ ସରଳ ମନରେ ଗୋ- ଶୂନ୍ୟ ପୁରୁଷଙ୍କୁ
ଧ୍ୟାନ, ସତ୍ୟ ପଦକୁ ଭଜନ, ସୁମନ ହୃଦର ଗୋ ।।୩୧।।

ସଉଭାଗି ହେବ ସ୍ତୀରୀ, ସରସ ଭକ୍ତିକୁ ଧରି, ସ୍ୱାଦରେ ସପୂର୍ଣ୍ଣ ଗୋ- ଶଂଖେ
ଭଗତ ହୋଇବେ, ସିନ୍ଧୁପ୍ରାୟେ ପୁରିଥିବେ ଶୁଣସାଧୁ ଜନ ହୋ ।।୩୨।।

ହିତକାରି ମାନହେବ ହସ୍ତଯୋଡ଼ି ପଡ଼ିଥିବ ହୋଇଣ ବନ୍ଦାଣ ଗୋ- ହରିହର
ବ୍ରହ୍ମାଥିବେ, ହେତୁଜ୍ଞାନରେ ପାଳିବେ, ହରସ ବିଧାନ ଗୋ ।।୩୩।।

କ୍ଷତିରେ ଖେଳ ବଢ଼ିବ, ଖ୍ୟାରସିନ୍ଧୁ ମେଳାହେବ, କ୍ଷୟେ ବୃଦ୍ଧି ନାହିଁ ଗୋ- କ୍ଷମା
ମହିମା ଅଶେଷ ଖଟିଥିବେ ଦାସୀଦାସ, ଭଣେ ଭୀମ ଭୋଇ ଗୋ ।।୩୪।।

## ଚତୁର୍ଥ ଚଉତିଶା

କ୍ଷୀନଦୋ, ମାନହେବ, କୋଳେ ଧରି ଖ୍ୟାରଦେବ, ଖଳଖଳ ହସି ଗୋ- କ୍ଷିତୀ
ଅଟେ ସ୍ତିରୀଲିଙ୍ଗ, ଖାଇଦେବ ଶକ୍ତିଲିଙ୍ଗ ଖେଳର ସେ ବସିଗୋ ।।୩୫।।

ହଇବ ପତି ସୁଆଗୀ ହରସ ଭକ୍ତିକୁ ମାଗୀ, ହିରାତେଜ ଅଙ୍ଗି ଗୋ- ହଦପ୍ରାୟେ
ପଦ୍ମଥଳ, ହୋଇ ଫୁଟିଥିବ ଫୁଲ ହରିବେ ତା ଚୁମ୍ବି ଗୋ ।।୩୬।।

ଶୋଇବରତ୍ନ ପଲଙ୍କେ ଶ୍ରଦ୍ଧାର ମନ ଉଛକେ, ସମର୍ଥକୁ ସାରିବ ଗୋ- ସମ୍ଭୁଲିଙ୍ଗ
ବସୁନ୍ଧରା, ସମ୍ଭାଳି ଥୋଇବ ଭାରା, ସୁଖ ଶାନ୍ତି ଦେବ ଗୋ ।।୩୭।।

ସତୀହେବ ସତ୍ୟବତୀ, ଶୋଭାସକଳ ଯୁବତୀ, ସୁବର୍ଣ୍ଣମଣ୍ଡପ ଗୋ- ସୁଖେ ଦିନକାଳ
ନେବ ଶୁଷ୍କ ଅଙ୍ଗ ପାଲଟିବ ସମୁଦ୍ର ସମାନ ଗୋ ।।୩୮।।

ସରଦ ଚନ୍ଦ୍ରମା ମୁଖ, ସର୍ବେ ଭକ୍ତିର ସନ୍ତକ ଯୁବତୀ ଗୋ- ସର୍ଜିବ ପୂର୍ବ ସୁକୃତ,
ସର୍ବେହେବ ଶିରୀବନ୍ତ, ସୁମରିପତିକି ଗୋ ।।୩୯।।

ବିରାଙ୍ଗନା ବିଳାସୁଣୀ, ବିଧିମତ ସୁଲକ୍ଷଣୀ, ବ୍ରହ୍ମାଣ୍ଡେ ବିଜୟେ ଗୋ- ବୁଝିବା
ବିବେକ କରି, ବୁଧିବନ୍ତ ଯଉଁ ନାରୀ, ବାସନା ଉଦୟେ ଗୋ ॥୪୦॥

ଲକ୍ଷ ହେବ ପୁରୁଷଙ୍କୁ ଲଭିବ ଯେଉଁମାନଙ୍କୁ, ଶ୍ରଦ୍ଧା ଭକ୍ତି ହେବ- ଲଭି ପୁରୁଷ
ରତନ, ଲଗାଇ ସେବା ଭଜନ ଲଗିଥିବ ଅଙ୍ଗ ଗୋ ॥୪୧॥

ରକତ ମାଉଁସ ହେବ, ରଖିଗୋ ବଞ୍ଚାଇ ଖାଅ, ରାଗତମ ମାରୀ ଗୋ- ରସା
ମଣ୍ଡଳରେ କଥା, ରଖିଯିବ ଯଶ ପୋଥା, ରହିଥିବ ପୁରିଗୋ ॥୪୨॥

ଯତି ସତି ଶୋଭାହେବେ, ଜାତି ଗୋତ୍ର ନ ପୁଛିବେ, ଯୁବା ବୟସରେ ଗୋ-
ଯୋଗରେ କରିବେ ମତୀ, ରୂପ ଯୌବନ ଉପେକ୍ଷି, ଜାଗ୍ରତ ମନରେ ଗୋ ॥୪୩॥

ମହିମା ସେ ବ୍ରହ୍ମରାଶି, ମନର ଭିତରେ ପସି, ମୋହିବେ ଜଗତ ଗୋ- ମରଣକୁ
ନାହିଁ ଭୟେ, ଭୀମ ଅରକ୍ଷିତ କହେ, ମାନିବେ ସମସ୍ତ ଗୋ ॥୪୪॥

ଭରସା ମୁଁ ଦେଉଅଛି, ଭାଳେଣୀ ନ କର କିଛି, ଭାବେ ବଞ୍ଚୁ ଥାଅ ଗୋ- ଭାଇବନ୍ଧୁ
ତେଜ୍ୟାକରି ଭକ୍ତି ପଥକୁ ଆବୋରୀ, ଭାରା ଲଦି ଦିଅ ଗୋ ॥୪୫॥

ବୀର କନ୍ୟାବେଶ କରି ବନ୍ଦାଇବେ ଅର୍ଘ୍ୟ ଥାଳି ବେଦିମଣ୍ଡପରେ ଗୋ- ବ୍ରହ୍ମ
କନ୍ୟା ମହାଦେଇ ବାଳକ ପାରାୟେ ହୋଇ ବସିବ ସଙ୍ଗର ଗୋ ॥୪୬॥

ଫେରିବ ଯଶ କିରତି, ଫରହର ବାନା ଛତି, ଫୁଟି ଉଡୁଥିବ ଗୋ- ଫିଟିବ ଚାରି
ଦୁଆର, ଫୁଙ୍କି ଶଙ୍ଖ ଶବ୍ଦସାର, ଫୁଲ ବୃଷ୍ଟି ହେବ ଗୋ ॥୪୭॥

ପତିପତ୍ନୀ ବୋଇଲାଇବ, ପୁଣ୍ୟ ଧର୍ମରେ ଚାଲିବ, ପାଳିବ ପରଜା ଗୋ- ପଣ୍ଡିତ
କବିତ ବର, ପାଇଗୋ କରିବ ଘର, ପ୍ରାଣର ଭାରିଯା ଗୋ ॥୪୮॥

ନାଗରୀ ଲାବଣ୍ୟବତୀ ନବିନ ବୟସ ମୂର୍ତ୍ତି ନର ଦେହଧରୀ ଗୋ- ନାମ ବ୍ରହ୍ମରେ
ଆନନ୍ଦ, ନଦୀପ୍ରାୟେ ଭକ୍ତବୃନ୍ଦ, ନିତ୍ୟସ୍ଥଳେ ପୁରୀ ଗୋ ॥୪୯॥

ଧର ଧର ଧ୍ୟାନକରି, ଧଇର୍ଯ୍ୟରେ ଅନୁସରି, ଧର୍ମ ଗୁଣମଣି ଗୋ- ଧୀର କରି
ଆନମନ, ଧରି ସମ୍ଭାଳି ଜୀବନ, ଧାଇଁ ଯିବା ଶହିଁ ଗୋ ॥୫୦॥

ଦିନ ହୋଇଲାଣି ଶେଷ, ଦ୍ୱାର ଫିଟିବ ଅବଶ୍ୟ, ଦାନଦେବେ ସବୁ ଗୋ- ଦରିଦ୍ର
ଦଶା ଫେଡ଼ିବେ, ଦୋଷକୃତ ନିବାରିବେ, ଦୟାବନ୍ତ ପ୍ରଭୁ ଗୋ ।।୫୧।।

ସ୍ତମ୍ଭନ ମହିମା ଧ୍ୱନି, ଧରି କମ୍ପିବ ମେଦୀନି, ସ୍ତମ୍ଭିଭୁତ ହୋଇ ଗୋ- ଧର୍ମ ଧନ
ମୂଲ୍ୟବାନ ଥୋକାଏ କରି ଯତନ ଥୋଇଥାଅ ବୋହି ଗୋ ।।୪୨।।

ତୀରରେ ଲାଗିବ ସବୁ ତାରଣ କରିବେ ପ୍ରଭୁ ତତ୍ତ୍ୱ ଏ ବଚନ ଗୋ- ତିୟାରୀ ମୁଁ
କହୁଅଛି ତରକେ ଧର ସାଉଟି ତପଯୋଗ ଧ୍ୟାନ ଗୋ ।।୫୩।।

ଅଣଶୃତି ମୂକ୍ତିପଦ, ଅନ୍ତର୍ଗତେ ଧରି ଭେଦ, ଅନୁଭବ କରି ଗୋ- ଅଗ୍ନି ଅଙ୍ଗୀକାର
ଗୁରୁ ଅଲେଖ ମହିମାମେରୁ, ଅଣରୂପେ ପୂରୀ ଗୋ ।।୫୪।।

ଢାଲିଦେବେ ମକରନ୍ଦ, ଢୁକିବେ ଭଗତ ବୃନ୍ଦ, ଢାଙ୍କୁଣି ଫିଟାଇ ଗୋ- ଢୋଲ
ଟମକ ନିଶାଣ, ଧାଡ଼ି କମ୍ପି ମହାଟାଣ, ଦଲଦଲ ହୋଇ ଗୋ ।।୫୫।।

ଡେଙ୍କୁରିଆ ଚାରିଦ୍ୱାରେ ଡାକୁଥିବ ନିରନ୍ତରେ, ଦାଣ୍ଡିଆ ପାହାରି ଗୋ- ଡରେ
ଥରହର ହୋଇ ଡାକି କହେ ଭୀମଭୋଇ ଡାକ ହରି ହରି ଗୋ ।।୫୬।।

ଠିକ ଆସି ହୋଇଲାଣି, ଠାବ ହେବା ଦିଶିଲାଣି, ଠାକୁର ବୁଝିବେ ଗୋ- ଠେଲ
ସିନ୍ଧୁପ୍ରାୟେ ଜାଣ, ଠୁଳହେବେ ଭକ୍ତଗଣ, ଠଣା ଯଗି ସର୍ବେ ଗୋ ।।୫୭।।

ଟିକେ ଟିକେ ହୋଇଦେଖ, ଟାଣେ ଉଡ଼ିବ ପରୀକ୍ଷ, ଟଳଟଳ ମହୀ ଗୋ- ଟେକି
କହୁଛନ୍ତି ଗୁରୁ ଟିଆ ଦେଇଣ ଶୂନ୍ୟରୁ ଟାକି ଥାଅ ରହି ଗୋ ।।୫୮।।

ନିରାଶ ନ ହୁଅ କେହି; ନିନ୍ଦା ସ୍ତୁତି ଥାଅ ସହି, ନିଷ୍ଠା କରି ମନ ଗୋ- ନିଶ୍ଚୟେ
ବୁଝିବେ କଥା, ନାରାୟଣ ସେ କରତା, ନାଶିବେ କଷଣ ।।୫୯।।

ଝାଞ୍ଜ କରତାଳ ଗିନି, ଝାମେରି ଝାମେରି ଧ୍ୱନି, ଝୁମୁକି ଯାଗୁରି ଗୋ- ଝଙ୍କାର
ଉଡ଼ିବ ନାଦ, ଝାଉଝାଉଁ କରି ଶବ୍ଦ, ଝାମ୍ପି ବସୁନ୍ଧରୀ ଗୋ ।।୬୦।।

ଜଗତ କରତା ପ୍ରଭୁ ଜନ୍ମ କରିଛନ୍ତି ସବୁ, ଜୀବନ ସୁଫଳ ଗୋ- ଜାଗ୍ରତରେଥାଅ
ରହି, ଜାତି ଗୋତ୍ର ଲୋଡ଼ା ନାହିଁ, ଯୁବତୀ ସକଳ ଗୋ ।।୬୧।।

ଛଇଳି ଋଷି କୁମାରୀ, ଛବି ଚାତୁରୀ କି ଧରି, ଛଡ଼ରସେ ନାଟ ଗୋ- ଛନ ଛନ
ବୋଇବାଳି, ମଥାନତ ଯିବ ଚାଲି, ଛତ୍ରତଳେ ଭେଟ ॥୬୨॥

ଚାହୁଁ ଚାହୁଁ ସଂଖ୍ୟା ଯୋଗ, ଚାଲିଆସୁଛି ସୁଭାଗ୍ୟ, ଚମକିବ ପୃଥୀ- ଚନ୍ଦ୍ରମା ବଦନ
ମୁଖ,ଚାହିଁଲେ ଖଣ୍ଡିବ ଦୁଃଖ, ଚାତୁରୀ ଯୁବତୀ ଗୋ ॥୬୩॥

ଅନାଦି ପ୍ରଭୁ କରତା, ଅଟନ୍ତି ସବୁରି ପିତା, ଆଣିବେ ସମସ୍ତ ଗୋ- ଆନନ୍ଦିତ
କେବା କହୁ ଅନନ୍ତ ଘରର ବହୁ ହୋଇବ ନିଶ୍ଚିନ୍ତ ଗୋ ॥୬୪॥

ଘୁଘୁ ଗରଜନ ଦେବ, ଘଡ଼ଘଡ଼ି ନାଦ ଶୁଭିବ, ଘଣ୍ଟନାଦ ସ୍ୱନେ ଗୋ- ଘନ ଶ୍ୟାମ
ମୂର୍ତ୍ତି ସଂକେ, ଘରଣୀ କି ଘେନି ସଙ୍ଗେ ଘୋରକୁଞ୍ଜବନେ ଗୋ ॥୬୫॥

ଗାଦି ଗରଦା ତୋଳିବେ, ଗୁରୁ ବିଜୟେ କରିବେ ଗୋଷ୍ଠୀମେଳା ହେବ ଗୋ-
ଗହ ଗହ ହୋଇ ସର୍ବେ ଗଡୁଥିବେ ମତ୍ତଭାବେ, ଗହଗହ ଶୋଭା ଗୋ ॥୬୬॥

କ୍ଷମା ହେବ ଦୋଷ କୃତ, ଖେଳ କରିବେ ଭଗତ, କ୍ଷତିମଣ୍ଡଳରେ ଗୋ- ଖିର
ଜଳରେ ସ୍ନାହାନ ଖଣ୍ଡ ସାକର ଭୋଜନ, କ୍ଷାତ ରବିତଳେ ଗୋ ॥୬୭॥

କାହିଁପାଇଁ ଏତେ କଥା, କେତେ ଦେଉଛ ଅବସ୍ଥା, କାରଣ ବୋଲାଇ ହେ- କର
ଯୁଗଳକୁ ଛନ୍ଦେ ପଡ଼ି ଗୁରୁପାଦ ବିନ୍ଦେ କହେ ଭୀମଭୋଇ ହେ ॥୬୮॥

## ପଞ୍ଚମ ଚଉତିଶା

କଳିଯୁଗେ ଦେହଧରି କରତାଙ୍କୁ ଅନୁସରି, କାଳବେଳ ଆସି ନିକଟ ହେଲାଣି,
କରିବି କିସ ଗୁହାରୀ ॥୧॥

କ୍ଷତିମଣ୍ଡଳରେ ଆସି ଖେଳ ଘରେ ଅଛି ପସି, ଖିରସିନ୍ଧୁବାସୀ ପ୍ରଭୁପାଦ ତଳେ
ବେଳ ହୁଁ ହୋଇଛି ଦୋଷୀ ॥୨॥

ଜ୍ଞାନ ନାହିଁ ମୋର ଦେହେ, ଗଡୁଅଛି ମାୟାମୋହେ, ଗତିପତି ଗୁରୁସ୍ୱାମୀଙ୍କ ଚରଣେ
ମନ ନ ରହୁଛି ଥୟେ ॥୩॥

ଘଟକୁ ତିଆରିଛନ୍ତି, ଘୋରବନେ ଅଛି ନୀତି, ଘେନି ବଚନ ଶିରରେ ନ ପାରୁଛି
ମୁଁ ମୂଢ଼ପାମର ମତି ॥୪॥

ଅଙ୍ଗେ ପୁରିଛନ୍ତି ରହି ଆତ୍ମାଲିଙ୍ଗ ରୂପେହୋଇ ଅନ୍ତର୍ଗତେ ମୁହିଁ ଭଜି ନ ପାରୁଛି, ଦିନ ଯାଉଅଛି ବହି ।।୫।।

ଚଳାଉ ଅଛନ୍ତି ପିଣ୍ଡ, ଚେତା ହେତୁରେ ବ୍ରହ୍ମାଣ୍ଡ, ତାରୁଚରଣରେ ଲୋଟି ନ ପାରୁଛି, ଧୀକ ହେଉ ମୋର ମୁଣ୍ଡ ।।୬।।

ଛନ୍ଦେ ପଡ଼ିଅଛି ରହି ଛାଡ଼ି ଗୁରୁପାଦ ଦୁଇ, ଛଡ଼ ଚକ୍ର ଯାଏ ବିରାଜି ଅଛନ୍ତି ଶବଦ ସ୍ୱରୂପ ହୋଇ ।।୭।।

ଯୋନିରେ ହୋଇଛି ଜନ୍ମ ଯୁଗ ଅଟେ କଳିନାମ ଜଗତକରତା ଉଦେ ହୋଇଥାଇ ବୁଧି ହେଉଅଛି ବାମ ।।୮।।

ଝେଞ୍ଜାକାରେ ଚରାଚର, ଝିମଣ୍ଟେ ନୁହଇ ପାର, ଝଟକ ବିଦ୍ୟୁପ୍ରାୟେ ପ୍ରଭୁ ରୂପ ହେଉଛି ମତେ ଅନ୍ତର ।।୯।।

ନିଷ୍କାମ ଭଗତି ଛାଡ଼ି ନିଷତେ ମରିଛି ବୁଡ଼ି, ନିରାଲମ୍ବ ପ୍ରଭୁ ଅକୃପା ହେବାରୁ ଝାମ୍ପୁଛି କାଳ ଲହଡ଼ି ।।୧୦।।

ଟିକାଏ ନାହିଁ ମୋ ବୁଦ୍ଧି ଟଳି ପଡ଼ିଛି ବାରାଧି, ଟାଣ ଶୂନ୍ୟ ପ୍ରଭୁ ଅନ୍ତର ଯାମେନି ଅଟନ୍ତି ସେ ସର୍ବସିଦ୍ଧି ।।୧୧।।

ଠକ ବିଷୟା ଜଗତ ଠିକଣା ନୁହଇ ମତ, ଠାରି କହୁଅଛି ଭୀମ ଅରକ୍ଷିତ ଠୂଳ ଶୂନ୍ୟବାସୀ ସତ୍ୟ ।।୧୨।।

ଡଙ୍ଗାବୁଡ଼ା ବୁଧିମୋର ଡକାୟତ ଖଣ୍ଟ ଚୋର, ଡାକୁଛନ୍ତି ସ୍ୱାମୀ ଆକାଶରେ ଥାଇ ନ ଶୁଭୁଛି କର୍ଣ୍ଣ ଦ୍ୱାର ।।୧୩।।

ଢମାଳିରେ ଅଛି ମାତି ଢାଙ୍କି ମାରୁଛି ପ୍ରକୃତି, ଢାଳ ଶୂନ୍ୟବାନା ଘୋଡ଼ାଇ ରଖନ୍ତେ, ରହିନ ପାରୁଛି ଚେତି ।।୧୪।।

ଅଣ ଆୟତେ ଅଚେତା, ଉଣା ହେଉଅଛି ଶୃତା, ଅଣାକାର ସ୍ୱାମୀ ପ୍ରାଣର ଈଶ୍ୱର ସାକ୍ଷାତେ ମୋର କରତା ।।୧୫।।

ତ୍ରିଗୁଣରେ ପଡ଼ି ଭୋଳା, ତତ୍ୱ ନ କରନ୍ତେ ଗଲା, ତିନି ତ୍ରଲୋକ୍ୟ କର୍ତ୍ତା ଜ୍ଞାନଭଣ୍ଡାର ହୋଇଛି କବାଟ ମେଳା ।।୧୬।।

ଥୟ ହେଉ ନାହିଁ ମନ, ସ୍ଥିରେ ନୋହୁଛି ଭଜନ, ସ୍ଥଳ ମହାନିତ୍ୟ ବାସିଙ୍କ ପୟରେ ନ କରୁଛି ଅନୁମାନ ॥୧୭॥

ଦୁରାଚାରିଅଟେ ମୁଁହି ଦରଶନେ ଇଚ୍ଛା ନାହିଁ, ଦୟାବନ୍ତ ପ୍ରଭୁ ଦୃଶ୍ୟ ନୋହୁଛନ୍ତି, ସକାମ ଭଗତି ଚାହିଁ ॥୧୮॥

ଧୀକ ଯାଉ ମୋର ଜୀବ, ଧରଣୀରେ ପାଇ ଠାବ, ଧର୍ମରାଜ ସ୍ୱାମୀଉଦେ ହୋଇଛନ୍ତି ଚିହ୍ନିବାକୁ ନାହିଁ ଜୀବ ॥୧୯॥

ନାମକୁ ଧରି ନ ପାରି ନାଶୁଛି ମୁରୁଖ ପରି, ନରଦେହ ଧରି ଅଶେଷ ବ୍ରହ୍ମାଣ୍ଡ, ଅଛନ୍ତି ପରା ଆବୋରି ॥୨୦॥

ପ୍ରେମ ସ୍ନେହେ ଦିନ ଗଲା, ପ୍ରକୃତିରେ କରି ଖେଳା ପରମ ପୁରୁଷ ଏକ ପାଦବିନ୍ଦ ନ ଦିଶି ଉହାଡ଼ ହେଲା ॥୨୧॥

ଫୁଲାପଣେ ହୋଇ ବାଇ, ଫଳଦେଖି ପଡ଼ି ମୋହି, ଫୁଙ୍କା ବନ୍ଧ ଫଣି ମଣି ଉପରକୁ କ୍ଷଣେ ନ ପାରିଲି ଧାଇ ॥୨୨॥

ବନ୍ଧନେ ପଡ଼ିଛି ମୁଁହି ବୁଧିଜ୍ଞାନକୁ ହରାଇ, ବାତୁଳ ହେଉଛି ସଂସାର ସାଗରେ ସତ୍ୟ ଧର୍ମ ଉଦେହୋଇ ॥୨୩॥

ଭବାର୍ଣ୍ଣବେ ଅଛି ପଡ଼ି ଭାବରେ ନ ପାରି ଏଡ଼ି, ଭୀମ ଅରକ୍ଷିତ ଜଣାଣ କରୁଛି, ଭାସିଯାଉଅଛି ବୁଡ଼ି ॥୨୪॥

ମାୟାଘୋଟି ଅଛି ମୋତେ, ମୋହନୀ ମଦ ନିରତେ, ମହିମା ସାଗର ବ୍ରହ୍ମାଣ୍ଡ ଭିତରେ ବିରାଜିଛନ୍ତି ସାକ୍ଷାତେ ॥୨୫॥

ଜୀବଅଟେ ଅପରାଧି ଯୋଗ ନ ପାରୁଛି ସାଧି ଯାବତ ବିଷୟା ନଟକୁଟ ହୋଇ, ପଡ଼ିଛନ୍ତି ଭବନଦୀ ॥୨୬॥

ରାଗରିସ ଅଙ୍ଗେପୁରୀ, ବିଷୟାରସ ଆବୋରୀ, ରା ରା, ମ ମ, ପଦ ହୃଦରେ ମୋହର, ପକାଉ ଅଛି ପାଶୋରି ॥୨୭॥

ଲାଭ ବଣିଜରେ ମାତି ଲାଗିଛି ମାୟା ପ୍ରକୃତି, ଲାଳଷେ ବିଷୟା ଛାଡ଼ି ହେଉ ନାହିଁ ନ କରୁଛି ସେବା ଭକ୍ତି ॥୨୮॥

ବ୍ରହ୍ମାଣ୍ଡ ଭିତରେ ଥାଇ ବ୍ରହ୍ମ ନ ପାରିଲି ଧାଇ ବାଣ୍ଟି ହେଉଅଛି ପଞ୍ଚ ଭୂତ ମନ, ଦୁର୍ଲଭ ଜନମ ପାଇଁ ॥୨୯॥

ସରିଯାଉଛି ସନ୍ତାପେ ଶିରବୁଡ଼ି ମହାପାପେ ଶରଣ ଶରଣ ବୋଲି ନ ପାରୁଛି ମଜିଅଛି ଘୋର ଦୁଃଖେ ॥୩୦॥

ସକ୍ଷ ନାହିଁ ମୋର ପିଣ୍ଡେ ସତ ନ କହୁଛି ତୁଣ୍ଡେ ଶୂନ୍ୟ ବ୍ରହ୍ମ ଅନ୍ତର୍ଯ୍ୟାମୀ ଥାଉ ଥାଉ, ପଡ଼ିଅଛି କାଳଦଣ୍ଡେ ॥୩୧॥

ଶୟନ ଭୋଜନ ନୀତି, ସୁଖ ଲଭି ଦିବାରାତି, ଶୁଭୁନାହିଁ ମୋତେ ଗୁରୁଙ୍କ ବଚନ ବିଷୟା ଧନ୍ଦାରେ ମାତି ॥୩୨॥

ହଉଅଛି ଦ୍ରୋହକାରୀ ହିତଜ୍ଞାନ ନ ସୁମରୀ, ହାସ୍ୟ ବଚନ ପ୍ରକୃତିରେ ପଡ଼ିଛି, ଚିନ୍ତା ହେଉଅଛି ଭାରି ॥୩୩॥

କ୍ଷିତିରେ ଜନମ ହୋଇ ଖଣ୍ଡ ତପସ୍ୟାରେ ରହି, କହେ ଭୀମହୀନ ପାମର ଅଜ୍ଞାନ, କ୍ଷମା ସାଗରଙ୍କୁ ଧ୍ୟାୟୀ ॥୩୪॥

## ଷଷ୍ଠ ଚଉତିଶା

କ୍ଷୀର ସିନ୍ଧୁ ବାସି ବ୍ରହ୍ମ କ୍ଷୀତିରେ ଉଠାଅ ଧର୍ମ କ୍ଷମାକରି ସ୍ୱାମୀ, ଦୋଷ ଅପରାଧ ବିରାଜ କର ଅନାମ ॥୩୫॥

ହୋଇଲାଣି ଯେତେ କୃତ, ହତଯାଉଛି ଜଗତ, ହରିବାକୁ ପାପ ପିଣ୍ଡବ୍ରହ୍ମାଣ୍ଡର, ଗୁରୁଦେବ ସାମରଥ ॥୩୬॥

ସବୁ ନଶିଲାଣି ଦେଖ, ସମ୍ଭାଳିଣ କର ମୋକ୍ଷ, ସତ୍ୟ ପୁରୁଷ ହୃଦରେ ଦୟାବହି, ନିବାର ପାପ କଳଙ୍କ ॥୩୭॥

ସମସ୍ତେ ଗଲେଣି ଭାସି, ସମୁଦ୍ର ସାଗରେ ପସି, ସଦ୍‌ଗୁରୁ ସ୍ୱାମୀ, ଉଦ୍ଧାରଣ କର, ଧର୍ମ ସ୍ୱରୂପରେ ଆସି ॥୩୮॥

ସର୍ବ ବିପତି କି, ପକ, ଶ୍ରବଣରେ ଶୁଣି ଡାକ, ସଂଖୁଳି ରଖ ଜକ୍ତ ଭକ୍ତ ତୁମ୍ଭର ଦୟାରେ କରି ବିବେକ ॥୩୯॥

ବ୍ରହ୍ମାଣ୍ଡ ହେଉଛି ବାହି, ବ୍ରହ୍ମନିଜ ରୂପହୋଇ, ବୀର ବଧୁବାନା, ପରକାଶ ବେଗେ,
ଶରଣ ରଖ ଘୋଡ଼ାଇ ।।୪୦।।

ଲାଗିଲାଣି ଅନ୍ୟାଚାର, ଲାବନ୍ୟ ମୂରତିଧର, ଲଘୁଦଶା ମତେ ପଡୁଅଛି ଯେତେ,
ଶୂନ୍ୟଚକ୍ରରେ ନିବାର ।।୪୧।।

ରସା ମେଦନୀର ଖଣ୍ଡେ ରହିଦେଉନାହିଁ ଦଣ୍ଡେ, ରଖ ରଖ ଧର୍ମ ସୁସ୍ଥାପନା ହେଉ,
ସ୍ଥିତି କରାଅ ବ୍ରହ୍ମାଣ୍ଡେ ।।୪୨।।

ଯୁଗ ଅଟେ କଳିକାଳ, ଯାଗ୍ରତ କରି ସମ୍ଭାଳ, ଜଗତର ନାଥ ବୁଝାମଣା କରି
ଶକତରେ ପ୍ରତିପାଳ ।।୪୩।।

ମହତ୍ତ୍ୱ ଗଲାଣି ଦେଖ ମହିମା ଗୁରୁ ଅଲେଖ, ଭୀମ ଅରକ୍ଷିତ ଅନୁସରି ଅଛି,
ଭକ୍ତିରେ କରି ବିବେକ ।।୪୪।।

ଭାରା ପଡ଼ିଲାଣି ମତେ, ଭରସା ନାହିଁ ମୋ ଚିତ୍ତେ, ଭାବଗ୍ରାହି ଗୁରୁଦେବଙ୍କ
ଛାମୁରେ ଜଣାଉଛି ଅନୁବ୍ରତେ ।।୪୫।।

ବାରେକ ବିନତି ଘେନ ବିଜୟେ କର ଆପଣ, ବ୍ରହ୍ମ ତେଜରୁପ ବିସ୍ତାର ସ୍ୱଦେହେ,
ଚିହ୍ନନ୍ତୁ ଜଗତ ଜନ ।।୪୬।।

ଫେଡ଼ ମାୟା ପଟଳକୁ ଫୁଟିଦିଶୁ ସଂସାରକୁ ଫୁରିଣା ହୋଇ ଚହାଁନ୍ତୁ ସର୍ବଜନ
ଓହାଡ଼ ନୋହୁ କାହାକୁ ।।୪୭।।

ପରୀକ୍ଷାକୁଛନ୍ତି ଚାହିଁ, ପରତେ କାହାରି ନାହିଁ, ପରମ ପୁରୁଷ ପ୍ରତିବୋଧ କର ବ୍ରହ୍ମ
ଶକତି ଦେଖାଇ ।।୪୮।।

ନବଖଣ୍ଡ ମେଦିନୀରେ, ନାମଗୁରୁ ଅବତାରେ, ନିଜ ରୂପତେଜ ଆପେ ଉଦେ
କର, କିରଣପଡୁ ତ୍ରିପୁରେ ।।୪୯।।

ଧାୟୀଛି ପାଦ ପଙ୍କଜେ, ଧର୍ମ ପ୍ରଭୁକର ବିଜେ, ଧରତୀ ଆକାଶ ଭାସିଯାଉଅଛି,
ରଖ ରଖ ଚତୁର୍ଭୁଜେ ।।୫୦।।

ଦାସ ଦୋଷ କ୍ଷମାକର, ଦୟାରେ ଉଦ୍ଧାରି ଧର, ଦଇବ କରତା ଅଟ ଗୁରୁଦେବ ଛେଦ ଅବନିର ଭାର ।।୫୧।।

ଥିତି ନ ମିଳୁଛି ମତେ, ଥୟେ ରଖୁଛ କେମନ୍ତେ, ସ୍ଥାନ ଭ୍ରଷ୍ଟକରି ବୁଲାଉଛ ପ୍ରଭୁ, କେତେଦିନ ପରିଯନ୍ତେ ।।୫୨।।

ତ୍ରିପୁର ଯାଉଛି ନାଶ, ତତ୍‌ପରେ ପ୍ରଭୁ ଆସ, ତିଆରି ଜଣାଣ କରୁଅଛି ମୁଁହି ଅଧିକ କହିବି କିସ ।।୫୩।।

ଅଣାକାରକୁପରଚେ ଆଣିବାକୁ କେହୁଅଛେ, ଅନାଦି ପୁରୁଷ ପରଂବ୍ରହ୍ମ ଅଟ, ଆସି ବିଜେକର ମଞ୍ଚେ ।।୫୪।।

ଢାଙ୍କୁଣି ଫେଡ଼ି ବାହାର, ଢାଲ ବାନା ହସ୍ତେ ଧର, ଢଳିଯାଉଅଛି ଏ ପିଣ୍ଡ ବ୍ରହ୍ମାଣ୍ଡ ତଦଗତେ ରକ୍ଷାକର ।।୫୫।।

ଦଣ୍ଡେ ପଡୁଅଛି ମୁଁହିଁ ଢେଙ୍ଗା ଜଗତ କି ଚାହିଁ, ଭୀମ ଅରକ୍ଷିତ ଗୁହାରୀ କରୁଛି, ଅମନରେମନ ଥୋଇ ।।୫୬।।

ଠାକୁରଙ୍କୁ ଅନୁସରି ଠାବଦେବେ ବୋଲି କରି କେହୁ ନ ଦିଶେ ତିନିପୁରେ ମୋତେ, ଖିରୋଦ ସିନ୍ଧୁ ବେହାରୀ ।।୫୭।।

ଟାକିଅଛି ମନେଭାଳି ଟିକିଏ ବୁଝିବେ ବୋଲି, ଟାଣ ମହାପ୍ରଭୁ ଗୁରୁ ଯେଣୁ ଅଟ ଉଛେ ପାରୁଛି ବୋବାଳି ।।୫୮।।

ନିଶି ଦିବସରେ ଡାକି, ନାମ ହୃଦୟରେ ଜପି, ନିରାଶ ନକର ଗୁରୁଦେବ ସ୍ୱାମୀ ଚିରାନ୍ତ କାଳ ମୁଁ ଦୁଃଖି ।।୫୯।।

ଝାମ ମାରୁଛି ଶରୀର, ଝରଝର ନେତ୍ରୁ ନିର, ଝଟତୀରେ ଧାଇଁ ବୁଝାମଣା କର ପ୍ରାଣ ବଲ୍ଲଭ ଠାକୁର ।।୬୦।।

ଯାହାକର ତୁମ୍ଭ ଖୁସି, ଯୋଗେଶ୍ୱର ଶୂନ୍ୟବାସି, ଜାଣି ଅନ୍ତର୍ଗତେ ଆକାଶ ମଣ୍ଡଳୁ ଧୀରେଧୀରେ ଆସ ଖସି ।।୬୧।।

ଛପନାକୋଟିର ପିତା ଛତ୍ରଗୁରୁ ଜ୍ଞାନଦାତା, ଛଡ଼ବେଦ ପରୁ ଓହ୍ଲାଇ ଆପଣ ଛଡ଼ାଅ ଏ ମୋର ଚିନ୍ତା ।।୬୨।।

ଚଳୁ ନାହିଁ ମୋର ପାଦ, ଚାହିଁ କ୍ରୋଧେ ଗଦଗଦ, ଚାନ୍ଦପ୍ରାୟେ ଉଦେ ହୋଇଲେ ସଂସାରେ ତେବେ ତୁଟିବ ପ୍ରମାଦ ।।୬୩।।

ଆଶା କରିଛି ବହୁତ, ଅବନା ମଣ୍ଡଳେ ଚିତ୍ତ, ଅନନ୍ତ ପୁରୁଷ ଆସ ଆସ ବୋଲି ପ୍ରସାରି ଅଛି ପଣତ ।।୬୪।।

ଘର ଦ୍ୱାର ତେଜିଦେଇ, ଘାଟେବାଟେ ଅଛି ରହି, ଘେନ ମୋ ବିନତୀ ଅଣାକାର ଜ୍ୟୋତି, ଦେଖ ଦେଖ ଦୟାବହି ।।୬୫।।

ଗର୍ଭ ପୋଡୁଅଛି ମୋର ଗୁରୁ କରୁଣା ବିଚାର, ଗରବ ଗଞ୍ଜନ ବାନା ବୋହିଅଛ, ଅସାଧ୍ୟକୁ ସାଧ କର ।।୬।।

ଖଳ କୁଟକୁ ନିବାର କ୍ଷମା ମହିମା ସାଗର ଖଣ୍ଡଣ କର ଭକ୍ତ ଦୁଃଖ ଦୁରିତ ବୀର ପରେ ହୋଇବୀର । ।।୬୭।।

କରିବି କିସ ଜଣାଣ କରତା ଅଟ ଆପଣ, କହେ ଭୀମ କନ୍ଧ କବିକୁଳ ଚାନ୍ଦ କରି ଗୁରୁ ଦରଶନ ।।୬୮।।

## ସପ୍ତମ ଚଉତିଶା

କଳିଯୁଗରେ ଯେବେ କରତା ସତ୍ୟ, କର୍ମଫଳ ମୋହର ହେବ ପ୍ରାପତ । କାହାକୁ ଦୋଷ ଦେବି କରିବି କୋପ, କରତା ସାକ୍ଷୀ ମୁହିଁ ଧର୍ମାଦି ଲୋକ ।।୧।।

ଖିରସିନ୍ଧୁ ବେହାରୀ ଯେମନ୍ତେ ଥିବେ, ଖଣ୍ଡନ କରି ଦୋଷ ନିଶ୍ଚେ ବୁଝିବେ । ଖଉ କରିକି କିମ୍ବା କରିବି ରୋଷ, କ୍ଷମାସାଗର ସାଖି ବ୍ରହ୍ମ ପୁରୁଷ ହେ ।।୨।।

ଗୁରୁଦେବ ମୋହର ଥିଲେ ଶକତା, ଗରବ ଗଞ୍ଜନ ବୁଝିଦେବେ ମୋ କଥା । ଗର୍ବ ଯେମନ୍ତେ ଥିବ ହୃଦୟଗତେ, ଗୁରୁଅନ୍ତର୍ଯାମେନି ଦଣ୍ଡିବେ ମୋତେ ହେ ।।୩।।

ଘଟେ ଘଟେ ବିରାଜିଛନ୍ତି ସେ ପ୍ରଭୁ, ଘୋଟିଲା ଜାଲ ବେଢ଼ ଛିଣ୍ଡିବ ସବୁ, ଘନଶ୍ୟାମ ମୂରତି ସ୍ୱରୂପ ବ୍ରହ୍ମ, ଘେନ ଭଗତି ଶୂନ୍ୟ ସତ୍ୟାତି ଧର୍ମ ହେ ।।୪।।

ଅନନ୍ତ ପ୍ରଭୁ ଅଛ ଜଗତେ ପୁରି, ଅବଶ୍ୟ ଶୁଣିବେ ସେ ଭୃତ୍ୟ ଗୁହାରୀ, ଅନ୍ୟାୟପଦ ମୋର ଥିଲେ ହୃଦରେ ଅଲେଖ ସାକ୍ଷିଛନ୍ତି ଶୂନ୍ୟମନ୍ଦିରେ ହେ ।।୫।।

ଚିରାନନ୍ଦ ପୁରୁଷ ଥିଲେ ଜଗତେ, ଚଉବର୍ଗ ନିଧି ଯେ ମିଳିବ ମତେ, ଚିତ୍ତେ କପଟ ମୋର ଥିବ ଯେମନ୍ତେ, ଚନ୍ଦ୍ର ଦେବତା ସାଖି ଆକାଶ ପଥେ ହେ ।।୬।।

ଛଡ଼ବେଦ ଠାକୁର ଥିବେ ଯେମନ୍ତେ, ଛାଇଛଟେ ବୁଝିବେ ମୋ ଦୁଃଖ ଯେତେ, ଛନ୍ଦମାୟା ମୋ ମନେଥିଲେ ପ୍ରକୃତି, ଛପନାକୋଟି ଜୀବ ସାଖି ଅଛନ୍ତି ହେ ।।୭।।

ଯୋଗେଶ୍ୱର ପୁରୁଷ ଥିଲେ ଶୂନ୍ୟରେ, ଜାଗ୍ରତେ ବୁଝାମଣା ହେବ ଛାମୁରେ, ଜନପ୍ରାଣୀଙ୍କ ମାୟା ଥିଲେ ମୋ ଚିତ୍ତେ, ଯତି ଯୋଗୀନ୍ଦ୍ରମାନେ ସାଖି ସମସ୍ତେ ହେ ।।୮।।

ଝିଞ୍ଜିର, ବେନିପାଦେ ଲାଗିବ ଯେବେ, ଝଟତି କରି ଗୁରୁଦେବ ବୁଝିବେ । ଝଗଡ଼ା ପାଦ ଥିଲେ ହୃଦରେ ରଖି, ଝାଡ଼ ବନ ପର୍ବତ ଅଛନ୍ତି ସାଖି ହେ ।।୯।।

ନିରାଲମ୍ବ ପୁରୁଷ ଥିଲେ ମେଦିନୀ, ନିଶ୍ଚେ ବୁଝିବେ ପ୍ରଭୁ ଯେ ଲାଭହାନି, ନଟକୁଟ ମୋଠାରେ ଥିଲେ ବିଚାର । ନାମ ବ୍ରହ୍ମପୁରୁଷ ସାଖି ମୋହର ହେ ।।୧୦।।

ଟାଣପ୍ରଭୁ ଯେମନ୍ତେ ଥିବେ ମର୍ତ୍ତ୍ୟର, ଟେକି ବୁଝିବେ ବାହୁକରି ବସ୍ତାର, ଟାଣପଣ ହୃଦରେ ଥିଲେ ଅବଶ୍ୟ, ଟେକିକରି କହୁଛି ସାଖି ଆକାଶ ହେ ।।୧୧।।

ଠାକୁର ଥିବେ ଯେବେ କଳିଯୁଗରେ, ଠାବଦେଇ ବୁଝିବେ ଏତେବେଳରେ ଠିକେ କହୁଛି ଭୀମହୀନ ପାମର ଠୁଳ ଶୂନ୍ୟ ପୁରୁଷ ସାଖି ମୋହର ହେ ।।୧୨।।

ଡେଙ୍ଗା ଜଗତି ପରେ ବିରାଜି ଥିଲେ, ଡୋଳେ ଚାହିଁ ବୁଝିବେ ବାରେକ ହେଲେ ଡିଙ୍ଗର ବୁଧି ଯେବେ ଅଛି ମୋହର, ଦାଣ୍ଡ ବାଟରେ ସାଖିଛନ୍ତି ଅପାର ହେ ।।୧୩।।

ଧାଡ଼ି ପଡ଼ିବ ଯେବେ ଥରକୁ ଥର, ଢାଙ୍କୁଣୀ ଫେଡ଼ି ପ୍ରଭୁ ହେବେ ବାହାର । ତମ ବଚନ ଯେବେ କହୁ ମୁଁ ଥିବି, ଢାଳ ବାନା ମୋ ସାଖି ଦ୍ରୋହ ପାଇବି ହେ ।।୧୪।।

ଅଣାକାର ପୁରୁଷ ଥିବେ ଯେମନ୍ତ, ଅଣହେଳା ନ କରି ବୁଝିବେ ସତ, ଅଣ ଉଚିତ ବୁଦ୍ଧିଥିଲେ ମୋହର, ଅନାଦି ପ୍ରଭୁ ସାକ୍ଷୀଛନ୍ତି ଶୂନ୍ୟର ।।୧୫।।

ତ୍ରଲକ୍ୟ ଚିନ୍ତାମଣି ଥିଲେ ବ୍ରହ୍ମାଣ୍ଡେ, ତତ୍ତ୍ୱକରି ବାରତା ବୁଝିବେ ଚାଣ୍ଡେ, ତମ
ରାଗ ପ୍ରକୃତି ଥିଲେ ମୋ ମତି, ତିନି ତ୍ରଲୋକ୍ୟଯାକ ସାକ୍ଷି ଅଛନ୍ତି ॥୧୬॥

ଥଳଲୀଳା ବାସିକି ଜଣାଉଅଛି, ଥୟକରି ଗୁହାରି ବୁଝିବେ କିଛି, ଥିବ ଯେବେ
କପଟିଆ ଆଚାର, ସ୍ଥିତିରେ ଛନ୍ତି ଯେତେ ସାକ୍ଷୀ ମୋହର ହେ ॥୧୭॥

ଦୟାବନ୍ତ ପୁରୁଷ ଥିଲେ ଜଗତେ, ଦୁଃଖ ଫେଡ଼ି ମୋହର ବୁଝିବେ ହିତେ,
ଦୁଷ୍ଟପଣିଆଁ ବୁଧି ଥିଲେ ମୋ ଚିତେ, ଦଇବ ସାକ୍ଷୀ ମୁହିଁ କହୁଛି ଏତେ ହେ ॥୧୮॥

ଧର୍ମରାଜ ପୁରୁଷ ଯେମନ୍ତେ ସତ, ଧାରଣାରେ ବୁଝିଲେ ହେବ ପ୍ରାପତ, ଧରିଥିବି
ମୁଁ ଯେବେ ହିଂସା ବାଦକ, ଧରଣୀ, ସାକ୍ଷୀ କି କହିବି ଅଧିକ ହେ ॥୧୯॥

ନର ଦେହରେ ଯେବେ ଥିବେ କରତା, ନିଶ୍ଚେ ବୁଝିବେ ନ୍ୟାୟେ ନୁହଇ ମିଥ୍ୟା
ନାଶ ବିଚାର ଥିବି ଯେମନ୍ତେ ପାଞ୍ଚି, ନବ ଖଣ୍ଡମେଦିନୀ ସାକ୍ଷୀ କହୁଛି ହେ ॥୨୦॥

ପୂର୍ଣ୍ଣାନନ୍ଦ ପୁରୁଷ ଗୁରୁ ହୋଇଲେ, ପୂର୍ଣ୍ଣକରି ସର୍ବଦା ବୁଝିବେ ଭଲେ, ପାପ ବିଚାର
ମୋର ଥିଲେ ଗର୍ଭରେ, ପରମ ଗୁରୁ ସାକ୍ଷୀଛନ୍ତି ମର୍ତ୍ତ୍ୟରେ ହେ ॥୨୧॥

ଫରହର ଶୂନ୍ୟରେ ଉଡୁଛି ବାନା, ଫଳ ମିଳିବ କରିବେ ବୁଝାମଣା, ଫିଶାଦି ବୁଦ୍ଧି
ଯେବେ ଥିବ ମୋ ଚିତ୍ତେ, ଫଣି ମଣି କରତା ସାକ୍ଷୀ ସମସ୍ତେ ହେ ॥୨୨॥

ବ୍ରହ୍ମ ପୁରୁଷ ଯେବେଥିବେ ସଂସାରେ, ବାହୁଟେକି ବୁଝିବେ ଧର୍ମ ସଭାରେ, ବଡ଼ିମା
ଫୁଲା ପଣେ ଥିଲେ ମୋ ମତି, ବେଦଶାହାସ୍ତ୍ର ମାନେ ସାକ୍ଷୀ ଅଛନ୍ତି ॥୨୩॥

ଭାସି ଯାଉଛି ଧର୍ମ ଅସତ୍ୟେ ସବୁ, ଭାରା ଛେଦନ କରି ବୁଝିବେ ପ୍ରଭୁ ଭାବି
କହଇ ଭୀମ ହୀନ ପାମର, ଭାବଗ୍ରାହୀ ପୁରୁଷ ସାକ୍ଷୀ ମୋହର ॥୨୪॥

ମହୀମଣ୍ଡଳେ ଯେବେ କରତା ଥିବେ, ମହତ୍ୱ ଦେଇ ବୁଝାମଣା କରିବେ, ମନ୍ଦବୁଦ୍ଧି
ପାଞ୍ଚନା ଥିଲେ ବିଚାର, ମହିମା ଗୁରୁସ୍ୱାମୀ ସାକ୍ଷି ମୋହର ହେ ॥୨୫॥

ଜଗତେ ଥିଲେ ଗୁରୁ ଅନ୍ତର୍ଯାମେନୀ, ଜାଗ୍ରତେ ବୁଝାମଣା କରିବେ ଜାଣି, ଜୀବ
ଉପରେ ହିଂସା ନାହିଁ ମୋ କିଛି, ଜଗତ ନାଥ ସାକ୍ଷୀ ସତ୍ୟ କହୁଛି ହେ ॥୨୬॥

ରସାମଣ୍ଡଳେ ଯେବେ କରତା ଥିବେ, ରକ୍ଷଣ କରି କଥା ବୁଝିବା ହେବେ, ରଖିଥିବି ଯେମନ୍ତେ ହୃଦେ ଅସତ୍ୟ, ନର ମନୁଷ୍ୟ ସାଖି କବି ପଣ୍ଡିତ ହେ ॥୨୭॥

ଲାଗିଥିବ ଯେମନ୍ତେ ସେବା ଭଗତି, ଲାଭଦେଇ ବୁଝିବେ ପ୍ରଭୁ ଅଜ୍ୟୋତି, ଲାବର ପଣ ବୁଧି ଥିଲେ ମୋ ଚିତେ, ଲୋକପାଳ ସହିତେ ସାକ୍ଷୀ ସମସ୍ତେ ହେ ॥୨୮॥

ବ୍ରହ୍ମାଣ୍ଡ ନାଥ ଯେବେ ବ୍ରହ୍ମାଣ୍ଡେ ଥିବେ, ବୀର ଧୁବାନା ବିସ୍ତାରିଣ ବୁଝିବେ, ବୋହିଥିବି ଯେମନ୍ତେ ହୃଦରେ ରାଗ, ବ୍ରହ୍ମା ଇନ୍ଦ୍ରାଦି ସାକ୍ଷୀ ଅଛନ୍ତି ସର୍ବ ॥୨୯॥

ଶୀରମଣି ଠାକୁର ଯେମନ୍ତେ ଥିବେ ସାର କରି ମୋ କଥା ନିଶ୍ଚେ ବୁଝିବେ, ସଂଗ୍ରାମ କରିବାକୁ ଥିଲେ ମୋ ମନ, ସର୍ଗେ ଦେବତା ସାକ୍ଷୀଛନ୍ତି ପ୍ରମାଣ ହେ ॥୩୦॥

ଶକତି ବହମାନ ପ୍ରଭୁ ହୋଇଲେ ସୁଦୟା କରି ବୁଝିବେ ତିନି କାଳେ, ଶାପ ଦେବାକୁ ଯେବେ ଅଛି ମୋ ମନ, ଶୂନ୍ୟ ପୁରୁଷ ସାକ୍ଷୀଛନ୍ତି ପ୍ରମାଣ ହେ ॥୩୧॥

ସମୋଦ୍ରପ୍ରାଏ ଯେବେ ଧରମ ଥିବ ଶବଦରେ ଶୁଣି ବିଚାରି ବୁଝିବ, ସଂହାର କରିବାକୁ ଥିଲେ ମୋ ଚିତ୍ତେ, ସୂର୍ଯ୍ୟ ଦେବତା ସାକ୍ଷୀ ଆକାଶ ପଥେ ହେ ॥୩୨॥

ହେତୁ ବନ୍ତ ପୁରୁଷ ଯେମନ୍ତେ ଥିବେ, ହାନିଲାଭ ଯା ହେବ ପ୍ରଭୁ ବୁଝିବେ, ହିଂସା ଯଦି ଥିବ ଜନ ପ୍ରାଣୀକି, ହରି ହରଏ ବେନି ଅଛନ୍ତି ସାକ୍ଷୀ ହେ ॥୩୩॥

କ୍ଷମା ସାଗର ଯେବେ ବ୍ରହ୍ମାଣ୍ଡେ ଥିବେ, କ୍ଷୀତିମଣ୍ଡଳେ ବୁଝାମଣା କରିବେ, କ୍ଷମେ ଭଣଇ ଭୀମ ଅର୍କ୍ଷିତ ଦାସ, କ୍ଷୀର ସିନ୍ଧୁ ବେହାରୀ, ଚରଣେ ଆଶ ॥୩୪॥

## ଅଷ୍ଟମ ଚଉତିଶା

ଖଳବଳ ହେଲାଣି ତ୍ରିପୁର ମହୀ କ୍ଷମା ନ କଲେ କେହି ରହିବେ ନାହିଁ, ଖଡ୍‌ଗଘେନି କଳିଯୁଗକୁନାଶ, ଖିଆଲ ମଣୁଅଛି କାଳପୁରୁଷ ହେ ॥୩୫॥

ହତହଇ ଯାଉଛି ପିଣ୍ଡ ବ୍ରହ୍ମାଣ୍ଡ, ହାରିଗୁହାରୀ କଲେ ପଡୁଛି ଦଣ୍ଡ, ହରି ଦୟା ନ କଲେ ନବର୍ତେ କିଛି, ହସ୍ତରେ ଧରି ସବୁ ଚିରି ଯାଉଛି ହେ ॥୩୬॥

ଶରୀରଧାରୀ ଯେତେ ଗଲେଣି ବହି, ସତ୍ୟପୁରୁଷ ଦୟା କରହେ ଚାହିଁ, ସାଗରେ ଭାଷି ଯାଉଅଛନ୍ତି ଜୀବ ଶୁଭାଶୀର୍ବାଦ ଦିଅ ପାଇବେ ଠାବ ହେ ॥୩୭॥

ସତାଇଶ ଅଙ୍କରେ ଏତେ ଅବସ୍ଥା, ଶଙ୍ଖୁଳିଣ ରଖ ନ ରହୁ ପତା, ଶତ୍ରୁପରାୟେ କାଳ ହେଉଛି ମାଡ଼, ଶୁନ୍ୟ ପୁରୁଷବାରେ ଚକ୍ର ଉହାଡ଼ ହେ ।।୩୮।।

ସମର୍ପି ଦେଇଛନ୍ତି ପିଣ୍ଡ ପରାଣ ସର୍ବ ଦୁଃଖ ପ୍ରଭୁ କରତା ଜାଣ, ସୁମରି ପାଦେ ପଶୁଛନ୍ତି ଶରଣ, ଶିରୋମଣିଠାକୁର କରତା ଜାଣ ହେ ।।୩୯।।

ବଢ଼ି ଯାଉଛି ଗୁରୁ ଆଜ୍ଞା ନ ମାନି, ବ୍ରହ୍ମପୁରୁଷ ଛେଦ ଚକ୍ରରେ ହାଣି, ବହୁତ ଦଣ୍ଡ ପଡୁଅଛି ଜୀବକୁ ବହି ଯାଉଅଛନ୍ତି ନେତ୍ରରେ ଦେଖୁ ଦେଖୁ ହେ ।।୪୦।।

ଲୋକପାଳ ସହିତେ ନର ମାନବ, ଲୁଚାଇ ରଖ ପ୍ରଭୁ ଅନନ୍ତ ଗର୍ଭ, ନଖକୋଣରେ କର କୋଠ ଭଣ୍ଡାର, ଲେପତ କରି ପାତକ କୁନିବାର ହେ ।।୪୧।।

ରୋଗ ସ୍ୱରୂପେ କାଳ ଶରୀରେରହି - ରୁଧିର ପୀୟୁ ଅଛି କାନ୍ତାନି ହୋଇ ରକ୍ଷାକର ଅଭୟ ବାନା ଘୋଡ଼ାଇ, ରବି ପରାୟେ କୃପା ନେତ୍ରରେ ଚାହିଁ ହେ ।।୪୨।।

ଯୁଗ ଘଟିଲା ଆସି ହେଲା ନିକଟ ଯେମନ୍ତ କରି ହେଲେ ନିବାର କୁଟ, ଜଗତକରତାଙ୍କୁ ନୁହଇ ଗରୁ, ଯଗାଇଲେ ଦୁବକୁ ହୋଇବ ଦାରୁ ହେ ।।୪୩।।

ମାୟା ଘୋଟି ଗଲାଣି ତିନି ଭୁବନେ, ମାଲୁମ ପଡୁ ନାହିଁ କାହାରି ମନେ, ମଣାଇ କହୁଅଛି ଭୀମ ଅକ୍ଷିତ, ମହିମା ଭଜସର୍ବେ ଜନଜଗତ ।।୪୪।।

ଭବସାଗର ନଦୀ ପଡୁଛି ମାଡ଼ି, ଭୟ କରାଉଅଛି ଘଡ଼ିକି ଘଡ଼ି, ଭଜି ଯେବେ ପାରିବ ନିଷ୍କାମ ଚିତ୍ତେ, ଭାଷି ନ ଯିବ ପାରିହେବ ସମସ୍ତେ ହେ ।।୪୫।।

ବେଳହୁଁ କର ଗୁରୁପୟରେସେବା, ବାରେ ବଞ୍ଚିବ ଯାର ସୁକୃତ ଥିବା, ବ୍ରାହ୍ମାଣ୍ଡ ପିଣ୍ଡ ହେଉଅଛି ପ୍ରଳୟ, ବ୍ରହ୍ମ ବଚନେ କହୁଅଛି ନିର୍ଣ୍ଣୟ ହେ ।।୪୬।।

ଫଳ ଅଟନ୍ତି ସବୁ ଛପନା କୋଟି, ଫେରାଅ କାଳ ରାହୁ ଆସୁଛି ଘୋଟି, ଫଳିଅଛନ୍ତି ସର୍ବେ ଅନାଦି ବୃକ୍ଷେ, ଫେଡ଼ କଷଣ ଆଜ୍ଞା ହେଉ ଶ୍ରୀମୁଖେ ହେ ।।୪୭।।

ପାପ ପୁରୁଷ ମୂର୍ତ୍ତିବନ୍ତରେ ଆସି, ପିଣ୍ଡ ବ୍ରହ୍ମାଣ୍ଡ ସବୁ ଯାଉଛି ନାଶି, ପରମ ଗୁରୁଦେବ ଅନାଇ ଦେଖ, ପାଦତଳେ ଶରଣ ସମ୍ଭାଳି ରଖ ହେ ।।୪୮।।

ନବ ଖଣ୍ଡ ମେଦିନୀ ଯାଉଛି ବୁଡ଼ି, ନିରନ୍ତରେ ମୁଁ ଉଚ୍ଚେ ପାରୁଛି ବୋବି, ନିତିପ୍ରତି ମୁଁ କରୁଅଛି ଗୁହାରୀ, ନିଜ ନାମକୁ ଅନ୍ତର୍ଗତେ ସୁମରି ହେ ॥୪୯॥

ଧାପ ଦେଉଛି କାଳ ବ୍ରହ୍ମାଣ୍ଡେ ପଶି, ଧ୍ରୁବମଣ୍ଡଳ ଆଦି ତ୍ରିଲୋକ୍ୟ ଗ୍ରାସି ଧରି ସମ୍ଭାଳି କାଳକୁଟ ଛଡ଼ାଅ, ଧର୍ମବନ୍ତ ପୁରୁଷ ବାହୁ ବେଢ଼ାଅ ହେ ॥୫୦॥

ଦଇବ ପୁରୁଷକୁ ନୁହଇ ଗରୁ, ଦୋଷ ଖଣ୍ଡ ଛପନାକୋଟିର ଗୁରୁ, ଦାନ ହୋଇଛି ପିଣ୍ଡ ବ୍ରହ୍ମାଣ୍ଡ ଆଦି, ଦୟାବନ୍ତ କରତା, ରଖ ସମ୍ପାଦି ହେ ॥୫୧॥

ଥରକୁ ଥର ପଡୁଅଛି ବିପତି, ସ୍ଥାପନ କର ଧର୍ମ ରହୁ ଏ କ୍ଷିତି, ଥେବି ଯାଉ ଏ ପାପଭାରା ଉନ୍ମାଦ, ସ୍ଥାନେସ୍ଥାନେ କଳୁଷ ଲାଗିଛି ବାଦ ହେ ॥୫୨॥

ତିନି ବାର ପ୍ରଳୟ ହେଲାଣି ପୃଥୀ ତ୍ରିପୁର କରତା ଯେ ରଖିଅଛନ୍ତି, ତରକି ନ ପାରୁଛ ଜନଜଗତ, ତତ୍ତ୍ୱଜ୍ଞାନକୁ ଏବେ ଧର ସମସ୍ତ ହେ ॥୫୩॥

ଅଣ ଆୟତେ ନାହିଁ ଜାଣୁଛ କିଛି, ଅଣ ଆକାର ଧର୍ମ ଉଦେ ହୋଇଛି। ଅଣ ଏକାଅକ୍ଷର ମୁଖରେ ଜପ, ଆଣିପିଣ୍ଡ ପରାଣକର ସମର୍ପ ହେ ॥୫୪॥

ଢୁକିଲାଣି ସଂସାରେ ଅକାଳକାଳ, ଢାଙ୍କୁଣୀ ଦେଇ ରକ୍ଷାକର ସକଳ। ଧାଡ଼ି ଦେଉଛି କାଳ ବେଲୁବେଳକୁ ଢାଲକରି ସମ୍ଭାଳ ଶୂନ୍ୟ ବାନାକୁ ହେ ॥୫୫॥

ଢାଙ୍କେଶରୀ ରୂପରେ କାଳପୁରୁଷ, ଡୋଳାରେ ଦେଖୁଦେଖୁ କରୁଛି ଗ୍ରାସ, ଡାକି କହୁଛି ଭୀମଭୋଇ ଅକ୍ଷିତ, ଡରିଅଛନ୍ତି ତିନି ପୁର ସମସ୍ତ ହେ ॥୫୬॥

ଠାବେଠାବେ ହେଲାଣୀ ମହା ଅନର୍ଥ ଠହର ଦିଶୁ ନାହିଁ କହୁଛି ସତ୍ୟ, ଠିକ ହେଉଛି ଶତାଇଶଅଙ୍କରେ ଠୁଙ୍କିବେ ଦେବୀଗଣ କାତି ଖପରେ ହେ ॥୫୭॥

ଟେକି ମୁଁ ଅମଣିଆ କରିଛି ପ୍ରଭୁ, ଟେକିପିଣ୍ଡ ବ୍ରହ୍ମାଣ୍ଡ ତ୍ରିପୁର ସବୁ, ଟିକିଏ ଦୟା କର ଗୁରୁ ଅଲେଖ, ଟଳି ଯାଉଅଛନ୍ତି ବଞ୍ଚାଇ ରଖ ହେ ॥୫୮॥

ନିରାକାର ପୁରୁଷ ନର ଦେହରେ ନିଷ୍ଠେ ଯେବେ ଜନ୍ମିଛ ଏହି ମର୍ତ୍ତ୍ୟରେ, ନାମ ବୋଲାଉଛ ଅଲେଖ ମହିମା, ନଶି ଯାଉଅଛନ୍ତି ଆଚରେ କ୍ଷମା ହେ ॥୫୯॥

ଝଟତି ବୁଝ ମନାକର ଗୋସାଇଁ, ଝାମ୍ପି ଦେଉଛି କାଳ ମତୁଆ ହୋଇ, ଝଡ଼ିଣ ପଡୁଅଛି ପିଣ୍ଡ ବ୍ରହ୍ମାଣ୍ଡ, ଝାଡ଼ବନ ପର୍ବତ ଆକାଶ ଖଣ୍ଡ ହେ ॥୬୦॥

ଯୋଗମାୟାକୁ କେହୁ ଜିଣନ୍ତା ଅଛି, ଯୋଗୀ ସ୍ୱରୂପ ହୋଇ ଖାଇଯାଉଛି, ଯୋଗାରୁଢ଼ ପୁରୁଷ ବିଚାର କର, ଜଳ ଥଳ ଅନଳୁ ଉଦ୍ଧରୀଧର ହେ ।।୬୧।।

ଛାଉଲି କରୁଅଛି କାଳପୁରୁଷ, ଛୁଉଁଛି ଯାକୁ ହୋଇଯାଉଛି ନାଶ, ଛନ୍ଦ କପଟ ରୂପେହୃଦରେ ବସି, ଛପନା କୋଟି ଯାକ କରୁଛି ଦୋଷି ହେ ।।୬୨।।

ଚାହିଁଅଛନ୍ତି ଧର୍ମ ପୁରୁଷ ରାଜ, ଚନ୍ଦ୍ରକିରଣ ପ୍ରାୟେ ବଢୁଛି ତେଜ, ଚଉଦିଗେ ଫେରୁଛି ମାୟାର ଆଖି, ଚୋରିକରିଛି କଳି ମନେ ନ ଶଙ୍କି ହେ ।।୬୩।।

ଅଲେଖ ଘରରାସ ଏ ନବଖଣ୍ଡ, ଅରଜିଛନ୍ତି ସବୁ ପିଣ୍ଡ ବ୍ରହ୍ମାଣ୍ଡ, ଅନୁସର ଲଗାଅ ଖିର ସିନ୍ଧୁରେ, ଅନନ୍ତ ରାଜା ହୋଇଛନ୍ତି ତହିଁରେ ହେ ।।୬୪।।

ଘଡ଼ିକି ଘଡ଼ି ପଡୁଅଛି ଚମକ, ଘଡ଼ିଘଡ଼ି ଆକାଶ ମେଦିନୀ କମ୍ପ, ଘୋର ଅନ୍ଧାର ଦଶଦିଗ ଭୁବନ, ଘୃଣା କରିଣ ମୋର ନସରେ ଦିନ ହେ ।।୬୫।।

ଗୁରୁତ ସାମ ରଥ, ଚାରିଯୁଗରେ, ଗର୍ଭଗତେ ରଖିବେ ଅଭୟପୁରେ, ଗରୁ ଚିନ୍ତା ମନରୁ କେବେ ନଗଲା ଗାରିମା ଯୁଗ ପଛେ ଶେଷ ହୋଇଲା ।।୬୬।।

ଖରାପ ହେଉଅଛି ତିନିଭୁବନ କ୍ଷମାକରି ପିଣ୍ଡରେ ଭର ପରାଣ, ଖେଳ ଲାଗିଛି ସତ୍ୟ କଳିର ଦୁଇ, କ୍ଷିତିମଣ୍ଡଳେ ଦିନଯାଉଛି ବହି ହେ ।।୬୭।।

କରତ ବସିଲାଣି ଅଙ୍ଗରେ ଆସି, କେବେ ବୁଝିବ ଶୂନ୍ୟ ସ୍ୱରୂପବାସୀ, କାଟିଗଲାଣି ମୋରଦେହ ଜୀବନ, କାନ୍ଦି କହୁଛି ଭୀମ ଅର୍କ୍ଷିତ ହୀନ ହେ ।।୬୮।।

## ନବମ ଚଉତିଶା

କରିବଇଁ କିସ ବୁଦ୍ଧି କାଳଦସା ପଡ଼ିଲା, କରତା ଦୟା ନୋହିଲା ପିଣ୍ଡୁ ପ୍ରାଣ ଛାଡ଼ିଲା, ସ୍ୱାମୀ ହେ ମହିମାଗୁରୁ, କରୁଅଛ କେମନ୍ତ, କରଯୋଡ଼ି ଆକାଶକୁ ପ୍ରସାରୁଛି ପଣତ ।।୧।।

ଖେଳ ବିଚାର ମୋତେ ଖୋଲା ପ୍ରାୟେ ଦିଶିଲା, କ୍ଷମାକରି ନ ବୁଜିଲେ କ୍ଷିର ଭାଣ୍ଡ ଭାସିଲା । ସ୍ୱାମୀ ହେ ମହିମାଗୁରୁ, ଖାନ୍ଦ ଭାଙ୍ଗି ଯାଉଛି । ଖେଦ ପାଇ ପଞ୍ଚୁ ଆତ୍ମା ଅଧଇର୍ଯ୍ୟ ହେଉଛି ।।୨।।

ଗାଦିମାରା ଯିବବୋଲି ଗୁଣାବାଦ ମନରେ, ଗୁରୁ ରକ୍ଷାକର ବାନା ଉଡୁଅଛି ଶୂନ୍ୟରେ, ସ୍ୱାମୀ ହେ ମହିମାଗୁରୁ, ଗରୁ ଚିନ୍ତା ପଡୁଛି, ଗରାସ ତୁଣ୍ଡେ ନ ପଡ଼ି ହାଡ଼ ମାଂସ ଝଡୁଛି ।।୩।।

ଘେନି ଯାଉଛି ଶୂନ୍ୟକୁ ଘୋର ଖଣ୍ଡ ବଣୀୟାଁ, ଘାତକୁ ଉଠାଇ ନିଶେ, ଘିଞ୍ଚିନେବ ଦୁନିଆଁ, ସ୍ୱାମୀ ହେ ମହିମାଗୁରୁ, ଘୋର ଦସା ଦେଖତ, ଘୋଡ଼ାଅ ପଦ୍ମଚରଣେ ଯେବେ ତୁମ୍ଭ ଭଗତ ।।୪।।

ଅନ୍ୟାଅନ୍ୟ ପଡୁଅଛି ରାଜଦଣ୍ଡ ବିପତି, ଆନ ଉନ୍ନ ହେଉଅଛି ପତି ଭକ୍ତା ଯୁବତୀ, ସ୍ୱାମୀ ହେ ମହିମା ଗୁରୁ, ଅନ୍ତର୍ଯ୍ୟାମୀ ପୁରୁଷ, ଅସୁର ଅବସ୍ଥା ଦେଖି ହେଉଅଛୁ ଆତୁଷ ।।୫।।

ଚମ୍ପି ନେଇଛନ୍ତି ପୁଷ୍ପ ଚାହୁଁ ଚାହୁଁ ମଧୁପ, ଚିରାନନ୍ଦ ଶ୍ରୀଛାମୁରେ କି କହିବି ଅଧିକ, ସ୍ୱାମୀହେ ମହିମାଗୁରୁ, ଚିଆଁଉଛି ମୋ ଦେହ। ଚିଆଁ ଚଇତନ ହଜି ପୋଡୁଅଛି ହୃଦୟ ।।୬।।

ଛନ ଛନ ହୋଇ ମତେ ଛାନିଆଁ ମାଡ଼ିଅଛି, ଛଡ଼ବେଦ ବାସିଙ୍କୁ ମୁଁ ଭରସା କରିଅଛି, ସ୍ୱାମୀ ହେ ମହିମାଗୁରୁ, ଛାମୁରେ ମୁଁ କହୁଛି, ଛାଇତଳ ଭାଙ୍ଗି ଡାଳ ଅନ୍ୟ ସ୍ଥାନ ହେଉଛି ।।୭।।

ଜୁରୀଲୁଟି ନେଉଛନ୍ତି ଯାବତ ଅନ୍ୟାୟକରି, ଜଳିପୋଡୁଛି ଜୀବନ ସନ୍ତାପରେ ସଂହାରି। ସ୍ୱାମୀ ହେ ମହିମାଗୁରୁ ଜାଣୁଥିବ ଅନ୍ତରେ। ଯାଉଛି ମହତ୍ୱବୋଲି ଜଣାଉଛି ଛାମୁରେ ।।୮।।

ଝାମମାରି ଅଛି ଦେହେ, ହେତୁ ଚେତା ବୁଡ଼ାଇ, ଝେଞ୍ଜାକା ଅଡୁଆ କରି ନେଉଛନ୍ତି ଛଡ଼ାଇ, ସ୍ୱାମୀ ହେ ମହିମାଗୁରୁ, ଝଡ଼ିପଡୁଛି ଫଳ, ଝାଉ ଝାଉ ବିପତିରେ ହେଉଅଛି ବିକଳ ।।୯।।

ନିସଖା ପ୍ରାଣିକି ନିତ୍ୟେ ପଡୁଅଛି କଷଣ। ନାସ ଯାଉଅଛି ଶିରୀହେଉଛି ବିଭୂଷଣ। ସ୍ୱାମୀ ହେ ମହିମାଗୁରୁ, ନିରନ୍ତରେ ଆରତ, ନିର୍ଦ୍ଦୟା କଲେ କରତା, ସରିଲାଟି ଇଜ୍ଜତ ।।୧୦।।

ଟଳି ଯାଉଅଛି ବୃକ୍ଷ ମୂଳଚେର ଉପୁଡ଼ି । ଟିଆକଣ୍ଠ ପରିଯନ୍ତେ ବଞ୍ଚୁଅଛି କିପରି, ସ୍ୱାମୀ ହେ ମହିମାଗୁରୁ ଟାଣକରି ନୋହୁଛି, ଟେକାବାଜି ହୃଦେ ମୋର ଅଙ୍ଗ ଶୋଧି ହେଉଛି ।।୧୧।।

ଠହର ନ ଦିଶେ ବୁଧି ଠୁଳ ହେବାର ଯାଏ । କହେ ଭୀମ ଅରକ୍ଷିତ ନାହିଁ ମୋର ଉପାୟେ । ସ୍ୱାମୀ ହେ ମହିମାଗୁରୁ ଠିଆ ହୋଇ ରହୁଛି । ଠୁଳଶୂନ୍ୟ ଉପରକୁ ଭରସା କରିଅଛି । ୧୨ ।

ଡୋଳେ ଦେଖୁଦେଖୁ ଦାଣ୍ଡେ ସରିଲାଣି ମହତ, ଡଗଡଗ ଅଗ୍ନି ଉଡ଼ି କଡୁରୁଛି କରତ । ସ୍ୱାମୀ ହେ ମହିମାଗୁରୁ ଡୋଳାଫୁଟି ଜାଉଛି । ଡାକୁଅଛି ଚଉଦିଗେ ଅନ୍ଧାର ଦିଶୁଅଛି ।।୧୩।।

ଢାଳି ନେଇ ଯାଉଛନ୍ତି ଢାଙ୍କୁଣିରୁ ଅମୀୟ, ଢଳିପଡୁ ଅଛି ପିଣ୍ଡ ହେଉଛି ଅସମୟ । ସ୍ୱାମୀ ହେ ମହିମାଗୁରୁ ଢୋଲ ଅଙ୍ଗେ ପଡୁଛି । ଢୁକି ଅକାଳ ମରଣ ପିଣ୍ଡୁ ପ୍ରାଣ ଛାଡୁଛି ।।୧୪।।

ଅନୁସରି ଥାଉଥାଉ ଅଣାକାର ପୟରେ । ଅନୁକ୍ଷଣେ ଅଣ ସୁଖ ଅସୁର ପ୍ରମାଦରେ । ସ୍ୱାମୀ ହେ ମହିମା ଗୁରୁ ଅଣହେଳା ନ କର । ଅଣରୂପ ଅନ୍ତର୍ଯ୍ୟାମୀ ଦୟାରେ ନ ପାସୋର ।।୧୫।।

ତରସ୍ତ ହେଉଛି ମନେ ତାଳୁ ଶୁଖିଯାଉଛି । ତପତଅନଳ ଅଗ୍ନିଦେହ ଚରି ଦେଉଛି । ସ୍ୱାମୀହେ ମହିମାଗୁରୁ, ତିମିରୀ ଘୋଟିଲାଣି, ତିନି ତଇଲୋକ ମତେ ଅନ୍ଧାର ଦିଶିଲାଣି ।।୧୬।।

ଥରି ଯାଉଅଛି ପିଣ୍ଡ ନ ରହୁଛି ସ୍ତବିରେ । ଥଳକୂଳ ନ ମିଳୁଛି ଭାସୁଅଛି ସିନ୍ଧୁରେ, ସ୍ୱାମୀ ହେ ମହିମା ଗୁରୁ ଥୋଇଥିଲା ରତନ । ଥାଉ ଥାଉ ଗୁରୁଦେବ ହେଉଛି ଅଯତନ ।।୧୭।।

ଦିନୁ ଦିନୁ ଦାଉ ଦଶା ଦୁଃଖଭାରା ହେଲାଣି, ଦାରୁଣ ଦଇବ ବିହି ଏତେସରି କଲାଣି । ସ୍ୱାମୀ ହେ ମହିମାଗୁରୁ ଦଧିଭାଣ୍ଡ ଭିତର, ଦୁଲୁଦୁଲୁ ଅନୁକ୍ଷଣେ ପଡୁଅଛି ପଥର ।।୧୮।।

ଧର୍ମ ବୁଡିଯାଉଅଛି, ଧରଣୀ ଥାଉଁ ଥାଉଁ। ଦୁଲୁକି ଯାଉଛି ଛାତି ଧୀର ହୋଇ ନରହୁ। ସ୍ୱାମୀ ହେ ମହିମା ଗୁରୁ। ଧକ ଧକ ଜୀବନ, ଧରାଧରି କରିବାକୁ ଶୁଭିଲାଣି ଘୋଷଣ ॥୧୯॥

ନିରନ୍ତରେନୟନରୁ ଅଶ୍ରୁଧାରା ବହୁଛି। ନିଶି ଦିବସରେ ମତେ ଭାଲେଣି ପଡ଼ିଅଛି। ସ୍ୱାମୀ ହେ ମହିମାଗୁରୁ। ନେଉଅଛନ୍ତି ବଳେ ନାମବ୍ରହ୍ମ ଗୁରୁଦେବ ରଖ ପୟରତଳେ ॥୨୦॥

ପୂର୍ବକାଳୁ ପାଦ ପଦ୍ମେ ସେବା ଭକ୍ତି ଲାଗିଛି, ପାପଘୋର କଳିଯୁଗ ପୁଣ୍ୟକୁ ହରୁଅଛି। ସ୍ୱାମୀ ହେ ମହିମାଗୁରୁ ପାରିହେବି କେମନ୍ତେ। ପିତାବୋଲି ଜଣାଣ କରୁଛି ରକ୍ଷା ନିମନ୍ତେ ॥୨୧॥

ଫାଳଫାଳ ଫାଟି ଯାଉଅଛି କର୍ମ ଅଦୃଷ୍ଟ। ଫରୁଣା ନୋହୁଛି ଚିତ୍ତ ପଡୁଅଛି ସଙ୍କଟ। ସ୍ୱାମୀ ହେ ମହିମାଗୁରୁ ଫେଡ଼ ଜାଲ ବନ୍ଧନି, ଫିଟୁ ନାହିଁ ଗଣ୍ଠି ଭୀଡ଼େ ପଡ଼ିଅଛି ଛନ୍ଦଣୀ ॥୨୨॥

ବୋହିନେଇ ଯାଉଛନ୍ତି ବନଘୋର ଭୀତର, ବେବସ୍ଥା ବୁଝିଲେ ମୋତେ ଲାଗୁଅଛି କାତର। ସ୍ୱାମୀ ହେ ମହିମା ଗୁରୁ ବୁଝାମଣା ବିଚାର। ବୁଦ୍ଧି ପାଞ୍ଚି ବାଟବଣା କରୁଛନ୍ତି ଅସୁର ॥୨୩॥

ଭାସି ଯାଉଅଛି ଭୀମ ଅରକ୍ଷିତ ଭଗତ, ଭାଲେଣି ପଡୁଛି ଦେହେ ବହୁଅଛି ରକତ ସ୍ୱାମୀ ହେ ମହିମାଗୁରୁ ଭୂତ ଭବିଷ୍ୟତ କଥା। ଭାଷାକୁ ଶୁଣିଲେ ଦେହୁ ବୁଡ଼ି ଯାଉଛି ଚେତା ॥୨୪॥

ମହିମାଙ୍କୁ ଭଜିବାରୁ ମନ ତପସ୍ୟା ଯୋଗ, ମାରାଯାଉ ଅଛି ଧର୍ମ ହେଉଅଛି ଦ୍ୱିଭାଗ। ସ୍ୱାମୀ ହେ ମହିମାଗୁରୁ ମହାଦଣ୍ଡ ପଡୁଛି। ମନ୍ଦକଥା ବେନି କର୍ଣ୍ଣେ ନୀତି ପ୍ରତି ଶୁଭୁଛି ॥୨୫॥

ଜୀବ ଥାଉ ଥାଉ ପିଣ୍ଡ ଜଳେ ବୁଡ଼ି ଗଲାଣି। ଜହର ବିଷ ପରଏ ସର୍ବାଙ୍ଗେ ଘୋଟିଲାଣି, ସ୍ୱାମୀ ହେ ମହିମାଗୁରୁ ଯାଗ୍ରତରେ ଉଧର। ଜୀବନ ନେବାକୁ ବସିଲେଣି ଖଣ୍ଡ ଅସରୁ ॥୨୬॥

ରାଇରଗଦରେ କ୍ରୋଧେ ଉଠୁଅଛି ରୋଦନ, ରଦବଦରେ କଳିଯା ହେଉଅଛି ଛେଦନ। ସ୍ୱାମୀ ହେ ମହିମାଗୁରୁ ରାତ୍ର ଘୋର ଅନ୍ଧାର, ରବିକି ଉଦେ କରାଇ ତିମିରିକି ନିବାର ॥୨୭॥

ଲୋଭେ ପଡ଼ିଯାଉଛନ୍ତି ଲାବର ମୁଁଢ଼ମତୀ, ଲୟଥାଉ ପଦ୍ମପାଦେ ଲଘୁଦେଉ ଅଛନ୍ତି। ସ୍ୱାମୀ ହେ ମହିମାଗୁରୁ ଲାଖ ଜଉମୁଦରେ ଲଗାଉଛନ୍ତି ଅନଳ ନେଇ ତହିଁ ଭୀତରେ ॥୨୮॥

ବଥାଇ ଯାଉଛି ଅଙ୍ଗ କରୁଅଛି ପରାସ, ବୀର ବଧୁବାନା ବୃଦ୍ଧ ଅବତାର ପୁରୁଷ। ସ୍ୱାମୀ ହେ ମହିମାଗୁରୁ ବାଧିଲାଣି ମତେ। ବାରାନିଧି ଦୁଃଖଘୋରେ ଭାଷୁ ଥିବି ମୁଁ କେତେ ॥୨୯॥

ସମର୍ପିଲି ସର୍ବକଥା ଘେନ ବା ନ ଘେନିବ। ସରିଲେ ମାନ ମହତ ଗୁରୁଦେବ ଜାଣିବ, ସ୍ୱାମୀହେ ମହିମାଗୁରୁ ଶିରଛିଡ଼ି ଯାଉଛି, ଶୁରାଇ ରୁଧିରଧାରା ଝରଝର ବହୁଛି ॥୩୦॥

ଶକତ ନ ଚଳେ ମୋର ଶୂନ୍ୟ ହେଲାଣି ଦେହ। ଶତ୍ରୁ ଉପଗତ, ହୋଇ କରାଉଛନ୍ତି ଭୟ, ସ୍ୱାମୀ ହେ ମହିମାଗୁରୁ ସହିଥିବି ମୁଁ କେତେ, ସମ୍ଭାଳି ନୁହଇ ଦୁଃଖ ହେଲାଣି ଅପ୍ରମିତେ ॥୩୧॥

ଶୟନ ଭୋଜନ ମତେ ସବୁ ହେଲାଣି ଜିତା, ସକଳ ପାଇଲ ପ୍ରଭୁ ଅନାଦି ଭକ୍ତହିତା ସ୍ୱାମୀହେ ମହିମାଗୁରୁ ସତ୍ୟ ଭଗ୍ନ ହେଉଛି। ଶୁଷ୍କ ନାହିଁ କଞ୍ଚାତରୁ ଅନଳରେ ଦହୁଛି ॥୩୨॥

ହତ ହଇଗଲେ ହତ୍ୟା ଲାଗିବ ଶ୍ରୀଛାମୁକୁ, ହାନିଲାଭ ହେଉଅଛି ଉଦ୍ଧରିବ ଆମ୍ଭକୁ। ସ୍ୱାମୀହେ ମହିମାଗୁରୁ ହିଂସାବାଦ ସଂସାର। ହରେକ କଥା ବୁଝିବ ଯେତେ ଭଲ ଅସାର ॥୩୩॥

ଖୀନ ହୋଇଲାଣି ଦେହ ଖଡ଼୍‌ଗଦାଢ଼େ କାଟି, କହେ ଭୀମ ଅରକ୍ଷିତ ଗୁରୁଚରଣେ ଲୋଟି। ସ୍ୱାମୀହେ ମହିମାଗୁରୁ ଖରାପକୁ ଯାଉଛି, ଖାର ମିଶି କ୍ଷୀରଭାଣ୍ଡେ ଅସୁନ୍ଦର ହେଉଛି ॥୩୪॥

# ଦଶମ ଚଉତିଶା

କ୍ଷୀରାର୍ଣ୍ଣବେ ପସିବାକୁ କରିଅଛି ଭରସା, ଖଣ୍ଡଚୋର ମେଳି ହୋଇ ଭାଙ୍ଗୁଛନ୍ତି ତୁରିଷା, ଗୁରୁହେ ଅଲେଖ ବ୍ରହ୍ମକ୍ଷିତି ମଣ୍ଡଳେ କ୍ଷ୍ୟାତ। କ୍ଷୀର-ନୀର ପିରତିରେ ମିଶୁଅଛି ରକତ। ॥୩୫॥

ହରଣହେଉଛି ବିତ୍ତ ହରି ନେଉଅଛନ୍ତି। ହଟପାଟ କଳିଯୁଗେ ସରିଅଛି ସମ୍ପତି, ଗୁରୁହେ ଅଲେଖବ୍ରହ୍ମ ହେଉଛି କି ନୋହୁଛି। ହାଣି ହେଉଛି ହୃଦୟ ହିଆ ଶୁଖି ଯାଉଛି ॥୩୬॥

ସବୁଦିନେ ସନ୍ତାପରେ ସରିଗଲାଣି ଦେହ, ଶୁଖାପୋଡ଼ା ଯାଇ ଶୁଖ ହେଉଅଛି ଅନ୍ୟାୟ, ଗୁରୁହେ ଅଲେଖବ୍ରହ୍ମ ସତ୍ୟହାନି ହେଉଛି, ସମୋହ ଭୀତରେ ସତ୍ୟଭେଳା ବୁଡ଼ିଯାଉଛି ॥୩୭॥

ସିଂହ ପରାକ୍ରମେ ବାନା ଭ୍ରମୁଅଛି ସଂସାରେ, ସଙ୍ଗଭାଙ୍ଗି ଯାଉଅଛି ହୋଇଅଣ ଆଚାରେ। ଗୁରୁହେ ଅଲେଖବ୍ରହ୍ମ ଶାସ୍ତି ଦଣ୍ଡ ପଡୁଛି, ଶୁଣି ଭବିଷ୍ୟ ବଚନ ଶିତମତେ ମାଡୁଛି ॥୩୮॥

ସୁରଦେବ କୁଟ ନିତ୍ୟେ ପଡୁଅଛି ଶିରରେ, ସରଣ ପଶୁଛି ଦୟାହେଉ ଗୁରୁଛାମୁରେ ଗୁରୁହେ ଅଲେଖବ୍ରହ୍ମ ସାର ବ୍ରହ୍ମ ଅନାଦି। ଶିରୋମଣି ଅନ୍ତର୍ଯ୍ୟାମୀ ରଖ ରଖ ସମ୍ପାଦି ॥୩୯॥

ବୁଦ୍ଧିବାଟ ହଜିଲାଣି ବଣା ହେଲାଣି ଚିତ୍ତ ବାକ୍ୟ ନସ୍ଫୁରଇ ଚିନ୍ତା ବାଧିଲାଣି ବହୁତ, ଗୁରୁହେ ଅଲେଖବ୍ରହ୍ମ ବଳାକୃତ ହେଲାଣି, ବହୁତ ବିପତ୍ତି ମତେ ପଡୁଅଛି ଭାଳେଣି ॥୪୦॥

ଲୟ କରିଅଛି ନିତ୍ୟେ ପ୍ରଭୁପାଦପଦ୍ମରେ, ଲେଖିଲେଖି କରି କେତେ ଜଣାଇବି ବାହ୍ୟରେ, ଗୁରୁହେ ଅଲେଖବ୍ରହ୍ମ ଲାଗିଛନ୍ତି ନିରତେ, ଲଭିବାଯାଏ ରତନ ମନେ ନାହିଁପରତେ ॥୪୧॥

ପରଂବ୍ରହ୍ମ ପଦ ଯେବେ ଚାରି ଯୁଗରେ ସତ। ରକ୍ଷାକର ସ୍ୱାମୀ ମତେ ଅଲେଖ ଅବଧୂତ, ଗୁରୁହେ ଅଲେଖବ୍ରହ୍ମ ରଏ ରଙ୍ଗ ପଡ଼ିଛି। ରାକ୍ଷସ ମେଳଛ ଠାରୁ କେଉଁ ରୂପେ ବଞ୍ଚୁଛି ॥୪୨॥

ଜାଣୁ ତ ଥିବ ଶ୍ରୀଗୁରୁ ଯାହା ହେଉଛି ମନ। ଯେତେ ଏ ଯାବତ କଥା କରିଅଛ ଭିଆଣ। ଗୁରୁହେ ଅଲେଖବ୍ରହ୍ମ ଯୋଡ଼ି ହେବା ଯୁଗଳ, ଯୁଗବଡ଼ ଦୁରୁଦଣ୍ଡ କରୁଅଛି ବିକଳ ॥୪୩॥

ମତେ କାହିଁକି ରଖିଛ ମାରି ଦିଅ ଆଗତ, ମହିମା ଆଶ୍ରେ କରାଇ ରଖ ତୁମ୍ଭ ଭଗତ। ଗୁରୁହେ ଅଲେଖବ୍ରହ୍ମ ମରିଗଲିଣି ମୁହିଁ। ଭଣେ ଭୀମ ଅରକ୍ଷିତ କର ମୋତେ ତ୍ରାହି ॥୪୪॥

ଭାବିଭାବି ଭରସାରେ କରିଅଛି ଆସରା, ଭାସି ଯାଉଅଛି ମୋର ଆବୋରିଲା ପସରା। ଗୁରୁହେ ଅଲେଖବ୍ରହ୍ମ ଭାଙ୍ଗି ଯାଉଛି କଥା। ଭ୍ରାନ୍ତି ଲାଗୁଅଛି ମତେ ବୁଡ଼ିଯାଉଛି ଚେତା ॥୪୫॥

ବତାଇ ଦେଉଛି ଶୁଣ ବିଧିମତ ପ୍ରମାଣ। ବଳେ ନେବାକୁ କଲେଣି ହଇସରି ସମାନ। ଗୁରୁହେ ଅଲେଖବ୍ରହ୍ମ ବାରୁବାର କହୁଛି, ବୁଝିଦେବେ ବୋଲି ବଡ଼ ପ୍ରଭୁଙ୍କୁ ମୁଁ ଧାଇଛି ॥୪୬॥

ଫଳିବାରଫଳ ହୋଇ ହେଉଅଛି ଖରାପ, ଫୁଟିଲା ଅମୃତଭାଣ୍ଡେ ପଡୁଅଛି ସୁରା ତ। ଗୁରୁହେ ଅଲେଖବ୍ରହ୍ମ, ଫଟାତ କରମ ମୋର, ଫନ୍ଦାକରିଥିଲି ବୃତ୍ତି ହେଉଅଛି ଅନ୍ତର ॥୪୭॥

ପଣତ ପ୍ରସାରିଅଛି ପୂର୍ଣ୍ଣାନନ୍ଦ ଛାମୁରେ, ପାଇବି ଅବଶ୍ୟ ବୋଲି ଲାଗିଅଛି ନାମରେ। ଗୁରୁ ହେ ଅଲେଖବ୍ରହ୍ମ ପଥ ବଣାହେଲାଣି। ପରାଣ ଛାଡ଼ି ପିଣ୍ଡରୁ ଶୂନ୍ୟେ ଉଡ଼ିଗଲାଣି ॥୪୮॥

ନାଶ ହେଉଅଛି ମୁହିଁ ନିଷ୍ଠା ଭଗତି ଥାଇ। ନନ୍ଦ ଅବଧୂତ ବୁଝିବେ ହୃଦରେ ଦୟା ବହି। ଗୁରୁହେ ଅଲେଖ ବ୍ରହ୍ମ ନୀଚ ଲୋକ ହସ୍ତରେ ନେଇ ଧରାଇ ଦେଉଛ ଦେଖୁ ଦେଖୁ ନେତ୍ରରେ ॥୪୯॥

ଧାଇଁ ଘିଞ୍ଚି ଧରାଧରି କଲେଣି ମନେ ହିଂସା, ଧର୍ମରାଜ ପ୍ରଭୁଥାଇ ପଡୁଛି କାଳଦଶା, ଗୁରୁହେ ଅଲେଖବ୍ରହ୍ମ ଧୀକ ଯାଉ ଜୀବନ। ଧରଣୀରେ କେତେ କାଳଥିବ ପିଣ୍ଡ ପରାଣ ॥୫୦॥

ଦୁଯାହଇ ପଞ୍ଚମନ ଦକଦକ ହେଉଛି । ଦିନ ନ ସରିଛି ମତେ ଦୁରୁଦଣ୍ଡ ପଡୁଛି ଗୁରୁହେ ଅଲେଖବ୍ରହ୍ମ ଦୟାବନ୍ତ ଗୋସାଇଁ । ଦୟାବହି ପ୍ରଭୁ ଦିଅ ଏକାନ୍ତରେ ମିଶାଇ ॥୫୧॥

ଥାବର ପରାଏ ମୋତେ ମାଡୁଅଛି ଜଳକା । ଥରିଯାଉଅଛି ଅଙ୍ଗ ମାଡୁଅଛି ତାଟକା, ଗୁରୁହେ ଅଲେଖବ୍ରହ୍ମ ଥରେ ଥରେ ବିପତି, ଥେବି ନୋହୁଛି ନିରତେ କାଟୁ ଅଛି କରତି ॥୫୨॥

ତିନି ତ୍ରଲୋକ୍ୟର ପ୍ରଭୁ ତଦନ୍ତରେ ସମ୍ଭାଳ ଡାକିଡାକି ଆଗପଛ ହେଲାଣି ଅସମ୍ଭାଳ । ଗୁରୁହେ ଅଲେଖବ୍ରହ୍ମ ତୁମ୍ଭରୀତ ନାଶିବ । ତଦଗତେ ନ ବୁଝିଲେ କାହାର କିସ ଯିବ ॥୫୩॥

ଆଣି ଏତେ ସରି ମୋତେ କରିଅଛ ଦଇବ । ଅନନ୍ତପୁରୁଷ ପ୍ରଭୁ ଅନୁମାନେ ବୁଝିବ । ଗୁରୁହେ ଅଲେଖବ୍ରହ୍ମ ଅଣାକାର ମହିମା । ଅନୁକ୍ଷଣେ ଚିନ୍ତାଜ୍ୱରେ ଭାଙ୍ଗିଲାଣି ଗାରିମା ॥୫୪॥

ଢାଳ ପ୍ରାୟେ ଛତ୍ରୀବାନା ଉଡୁଅଛି ଜଗତ । ଢାଙ୍କୁଣୀ କବାଟ ଦେଇ ରଖ ତୁମ୍ଭ ଭଗତ । ଗୁରୁହେ ଅଲେଖବ୍ରହ୍ମ ଢାଉରଙ୍ଗେ ସଂସାର, ଢୁକିଲାଣି ଆସି କଥା କରୁଛ କି ବିଚାର ॥୫୫॥

ଡିଙ୍ଗର ମାନଙ୍କୁ ଦେଖି ଡରୁଅଛି ଜୀବନ । କହେ ଭୀମ ଅରକ୍ଷିତ ପଶୁଅଛି ଶରଣ । ଗୁରୁହେ ଅଲେଖବ୍ରହ୍ମ ଡାଳ ଭାଙ୍ଗିଯାଉଛି । ଡାକିଡାକି ଶ୍ରୀଗୁରୁଙ୍କୁ ବିକଳ ମୁଁ ହେଉଛି ॥୫୬॥

ଠିକଣା କରି କହୁଛି ଠିକ ବଚନ ସତ, ଠାର ନାରବାଣୀ ରିତି ଜାଣୁଅଛି ମୋ ଚିତ୍ତ । ଗୁରୁହେ ଅଲେଖବ୍ରହ୍ମ ସ୍ଥାନ ଭ୍ରଷ୍ଟ ହେଉଛି । ଠଣା ଜଗିବାର ମୋର ବିଅର୍ଥକୁ ଯାଉଛି ॥୫୭॥

ଟାଡ଼ିବାକୁ ବସିଛନ୍ତି ଟୋକାମୁଢ଼ ପାମରେ । ଟାଣିନେଇ ଯତନରେ ପକାଇବେ ଫାନ୍ଦରେ । ଗୁରୁହେ ଅଲେଖବ୍ରହ୍ମ ଟାକିଅଛି ଆଜ୍ଞାକୁ, ଟାଣେ ଡାକୁଛି ଆତଙ୍ଗେ ନିଜ ବ୍ରହ୍ମ ପ୍ରଭୁଙ୍କୁ ॥୫୮॥

ନିଷିଦିବସରେ ମୋତେ ମାଡୁ ଅଛି ରୋଦନ । ନିତ୍ୟେ ନିରନ୍ତରେ ଗର୍ବ ହେଉଅଛି ଗଞ୍ଜନ, ଗୁରୁହେ ଅଲେଖବ୍ରହ୍ମ ନିଶାଖା ମୁଁ ପରାଣୀ । ନିନ୍ଦା ସ୍ତୁତି ହାନିଲାଭ ସର୍ବଠାରେ କାରେଣୀ ॥୫୯॥

ଝରଝର ବେନିନେତ୍ରୁ ଅଶ୍ରୁଧାରା ବହୁଛି, ଝଡ଼ି ପଡୁଛି ଜୀବନ ସ୍ଥିତିରେ ନ ରହୁଛି । ଗୁରୁହେ ଅଲେଖବ୍ରହ୍ମ ଝାଡ଼ବଣ ଭୀତର । ଝଟତିରେ ଧରୀ ନେଇ ପକାଇବେ ପଥର ॥୬୦॥

ଯତନରେ ବାନ୍ଧି ମାରି ନେଉଛନ୍ତି ଯୋଗାରି । ଯୁଗଘୋରକଳିକାଳ ହେଉଅଛି ଭଗାରୀ । ଗୁରୁହେ ଅଲେଖବ୍ରହ୍ମ ଯୋଗଧାରୀ ପୁରୁଷ । ଜୀବନ ମୋ ପୋଡୁଅଛି ବରଷୁଛି ଗିରିଷ ॥୬୧॥

ଛିଡ଼ିଯାଉଛି ଦଉଡ଼ି ଛନ୍ଦକୁଟ ଆଚରି । ଛଟକରେ ଗୁରୁଦେବ ବୁଝ ତୁମ୍ଭେ ବିଚାରୀ । ଗୁରୁହେ ଅଲେଖବ୍ରହ୍ମ, ଛଡ଼ାଛଡ଼ି ନ କର । ଛାଇତାଳ ଭାଙ୍ଗିଯିବ ହୋଇଗଲେ ଅନ୍ତର ॥୬୨॥

ଚକିତ ହୋଇ ଚାହିଁଛି ଘୋରକଳି ଯୁଗରେ । ଚେତାବୁଡ଼ି ଯାଉଅଛି ବିଚାରିଲେ ମନରେ । ଗୁରୁହେ ଅଲେଖବ୍ରହ୍ମ ଚିନ୍ତାମଣି ପୁରୁଷ । ଚରମ ଦେହ ଶୁଖାଇ କରୁଅଛି ପରାସ ॥୬୩॥

ଅନାସ୍ତ ପରାଣୀ ଦିନ କେଉଁରୂପେ ଯାଉଛି । ଆଶ୍ରେ କରିଥିଲା ଫନ୍ଦା ଅପ୍ରାପତ ହେଉଛି । ଗୁରୁହେ ଅଲେଖବ୍ରହ୍ମ ଉଦେଅଛ ସ୍ୱଦେହେ । ଅନନ୍ତ ଅରୁପ ନାମ ମହିମା ଜୟେ ଜୟେ ॥୬୪॥

ଘିଞ୍ଚି ନେଉଛି ସବର ଘୋଡ଼ାଇ ମାୟାଜାଲ । ଘଡ଼ି ଘଡ଼ି ଘାତ ଶବ୍ଦେ ଉଡ଼ାଇବ ସକଳ । ଗୁରୁହେ ଅଲେଖବ୍ରହ୍ମ ଘୋର ନିଶିଅନ୍ଧାରେ । ଘୁଞ୍ଚିବାକୁ ସଜ ନାହିଁ ପଡ଼ିଅଛି ଫନ୍ଦାରେ ॥୬୫॥

ଙ୍କାନହେତୁ ହଜିଲାଣି ମାୟା ଚିନ୍ତାସାଗରେ । ଗୁରୁଦେବ ଅନ୍ତର୍ଯାମୀ କି କହିବି ଛାମୁରେ ଗୁରୁହେ ଅଲେଖ ବ୍ରହ୍ମ ଗଡୁଅଛି ଭୂମିରେ । ଙ୍କାନନେତ୍ରେ ଚାହିଁ ପ୍ରଭୁ ବୁଝ ଧୀର ସମୀରେ ॥୬୬॥

କ୍ଷମାହେଲେ ସିନା ଅଙ୍ଗେ ଖେଳ ରସ ବଢ଼ିବ। କ୍ଷୀତୀ ମଣ୍ଡଳରେ ଯଶ ଯୁଗେଯୁଗେ ରହିବ। ଗୁରୁହେ ଅଲେଖ ବ୍ରହ୍ମ ଖଣ୍ଡ ତପ ହେଉଛି। ଖଳ ଦାରୁଣ ଦଇବ ଖୋଳି ଧରି ଯାଉଛି ॥୬୭॥

କରତା ବୁଝିବେ ବୋଲି କରି ଅଛି ଆସରା, କରଯୋଡ଼ି ସମର୍ପିଲି ଦୁଃଖସୁଖ ପସରା, ଗୁରୁହେ ଅଲେଖବ୍ରହ୍ମ ଭଣେ ଭୀମ ଅକ୍ଷିତ। କପୋଳରେ ଥିବ ଯେବେ ପୂର୍ବଜନ୍ମ ସୁକୃତ ॥୬୮॥

## ଏକାଦଶ ଚଉତିଶାର

## (‘କ୍ଷ’ ଠାରୁ ‘କ’ ପର୍ଯ୍ୟନ୍ତ)

ଖେଳୁଅଛୁ ଆମ୍ଭେ ଜଗତେ ଯେ କ୍ଷିତୀ ମଣ୍ଡଳେ ଆସି। ଖଳ ଯାଉଁଛନ୍ତି ସମସ୍ତେ ଯେ କ୍ଷମାକର ଆସ୍ୱାସୀ ॥୩୫।

ହଟପଟ କରିଅଛନ୍ତି, ଯେ ହତ ନୁହଁନ୍ତି କେହି, ହୀନ ଅବସ୍ଥାରେ ବଞ୍ଚିଚୁ ଯେ ହିଆ କରତି ହୋଇ ॥୩୬॥

ଶୂନ୍ୟାଧି ପୁରୁଷ ସକଳ ଯେ ଅନ୍ତର୍ଗତେ ଜାଣିବ, ଶୃତି ପାଦତଳେ ସୁମନେ ଯେ ଯାହା ଭାବୁଛି ଜୀବ ॥୩୭॥

ସଦାକାଳେ ସର୍ବ ଦିନରେ ଯେ ଉଦେ ଅସ୍ତେ ଦର୍ଶନେ। ସୁମରଣା ଯେତେ ଜଣାଣ ମୋ ଶୁଣୁଥିବେ ତ କର୍ଣ୍ଣେ ॥୩୮॥

ଶରଣପଶୁଛି ସମ୍ଭାଳ ଯେ ଟେକି ଅଲେଖ ବାନା, ସତୀ ଯତି ମନ ବାଞ୍ଛିତ ଯେ ସ୍ୱାମୀ ହେଉଛି ଊଣା ॥୩୯॥

ବଢ଼ି ଆସୁଅଛି ବିଷୟା ଯେ ହୋଇ ଅନେକ କଥା, ବୁଝିଦେବେ ସ୍ୱାମୀ ବୋଲୁଛି ଯେ ଗୁରୁଦେବ କରତା ॥୪୦॥

ଲୋକେ ଲାବରେ ହେଉଛନ୍ତି ଯେ ନାହିଁ ବୁଧି ବିଚାର। ଲାଭ ନିରନ୍ତରେ ଲୋଭରେ ଯେ କରି ଅଣ ଆଚାର ॥୪୧॥

ରହି ନ ହୁଅଇ ବ୍ରାହ୍ମାଣ୍ଡେ ଯେ ରଖିଦେବାକୁ ନାହିଁ। ରାକ୍ଷସ ଅସୁର ସଂସାରେ ଯେ ରଜ ତାମଶ ବହି ॥୪୨॥

ଯୁଗ ଅନ୍ୟାୟରେ ଭରସା ଯେ ନାହିଁ ଜୀବନେ ମୋର । ଜୋଡି ରୁପେ ବିଜେ କରିଛ ଯେ ଯାହା କରିବ କର ॥୪୩॥

ମହିମା ନାମକୁ ମନରେ ଯେ ଭଜି ହୁଅ ଭଗତି, ଭୀମ ଅରକ୍ଷିତ କହୁଛି ଯେ ଧରି ତ୍ରିପୁର ପୃଥୀ ॥୪୪॥

ଭାରା ପକାଇଲି ଛାମୁରେ ଯେ ଭାରି ହଇଲା ଯେଣୁ, ଭରସା ନାହିଁ ନି ମୋହର ଯେ ଭୟେ କମ୍ପୁଛି ତନୁ ॥୪୫॥

ବସି ଭାଳୁଅଛି ମନରେ ଯେ ଚିତ୍ତେ ଦଗଧି ହୋଇ, ବିଭୁଷଣ କରି ଅଛନ୍ତି ଯେ ଦର୍ଶନକୁ ଛଡ଼ାଇ ॥୪୬॥

ଫରିଆ ଭୀତରୁ ରତନ ଯେ ମଣି ଯାଉଛି ହଜି, ଫଳ ଧରି ନାହିଁ ଫୁଲରେ ଯେ ଡାଳ ପଡୁଛି ଭାଜି ॥୪୭॥

ପିତା ମାତା ଅଟ ଶ୍ରୀଗୁରୁ ହେ ଅନ୍ତର୍ଯାମୀ ପୁରୁଷ, ପାଇବି ବୋଲୁଛି ଫଳକୁ ଯେ ପାଦେ କରିଛି ଆଶ ॥୪୮॥

ନିରନ୍ତରେ ନିଷ୍ଠା କରିଛି ଯେ ସତ୍ୟ ପଦରେ ମୁହିଁ, ନିୟମ କରିଛି ନାମରେ ଯେ ଆକାଶକୁ ଅନାଇଁ ॥୪୯॥

ଧର୍ମାଦି ପୁରୁଷ ମହିମା ହେ ଧାଡ଼ି ବୁଝ ଆମ୍ଭର। ଧରି ଘେନିଗଲେ ଧରଣୀ ହେ ଆମ୍ଭେ ହେବୁ କାହାର ॥୫୦॥

ଦୁଃଖ ଭୁଞ୍ଜୁଅଛୁ ଦେହରେ ଯେ ନିନ୍ଦା କଷଣ ସହି, ଦୟାଳୁ ପୁରୁଷ ଦେଖନା ହେ ସଖା ନାହାନ୍ତି କେହି ॥୫୧॥

ସ୍ଥିତି ଥିଲା ପ୍ରାଣୀ ଆହୁରି ହେ ହେଉ ଅଛି ବିଥାନି, ଥରୁଅଛି ଦେହ ଜୀବନ ହେ ଥୋକେ ବଚନ ଶୁଣି ॥୫୨॥

ତିନି ତ୍ରଲକ୍ୟରେ କରତା ହେ ତଦଗତେ ବୁଝିବ, ତରସ୍ତ ହେଉଛି ଜୀବନ ଯେ ତାରି ଉଦ୍ଧରୀ ନେବ ।।୫୩।।

ଅନାଦି ପୁରୁଷ ଅନନ୍ତ ଯେ ଆପେ କରିଛ ବିଜେ । ଅନୁକ୍ଷଣେ ଅନୁସରିଛି ଯେ ପଡ଼ି ଶୟନ ଶେଯେ ।।୫୪।।

ଢଳି ପଡୁଅଛି ଶରୀର ଯେ ଧାଡ଼ି ପବନ ଘାତେ । ଢୁକିଲାଣି କାଳ ବିପତ୍ତି ହେ ଗୁରୁ ଢାଙ୍କି ରଖ ତୁରିତେ ।।୫୫।।

ଡରୁଅଛି ଦେହ ଜୀବନ ଯେ ଡାକି ଡାକି ଭରସା, ଭୀମ ଅରକ୍ଷିତ କହୁଛି ହେ ଗୁରୁ ପୟରେ ଆଶା ।।୫୬।।

ଠହରି ନୋହିବା ସକାସୁ ଯେ ଠାକୁରଙ୍କୁ କହୁଛି । ଠିଆ ହୋଇ ପ୍ରଭୁ ଛାମୁରେ ହେ ଠିକ ବଢ଼ାଉଅଛି ।।୫୭।।

ଟାକି ଥାଅ କଳି ଟିଆକୁ ଯେ କହିଛନ୍ତି ତିଆରି, ଟୋକା ଟାପରିଆ ସମସ୍ତେ ଯେ ହେଉଛନ୍ତି ବଇରି ।।୫୮।।

ନାରୀ ପୁରୁଷ ନ ଜାଣନ୍ତି ଯେ ସଦ ବ୍ରହ୍ମର ସାର, ନିନ୍ଦା କର୍ଣ୍ଣେ ଶୁଣି ନିଷତେ ହେ ଫେରି ହନ୍ତି ବାହାର ।।୫୯।।

ଝିଙ୍କି ନେଉଅଛି ଝଂପାଇ ଯେ କଳି ପୁରୁଷ ପାପ, ଝେଞ୍ଜାକା ଝଗଡ଼ା କଥାରେ ଯେ ସ୍ୱାମୀ ଶ୍ରୀଗୁରୁ ସାକ୍ଷ ।।୬୦।।

ଜଗତ ଯାକରେ ସମାନେ ଯେ ରୁପେ ଅରୁପେ ପୁରି, ଯାହା ଜଣାଉଛି ଅନ୍ତରେ ଯେ ବୁଝୁଥିବ ତ ହରି ।।୬୧।।

ଛାଇତଳ ଭାଙ୍ଗିଯାଉଛି ଯେ ଛନ୍ଦ କୁଟିଳ ପସି, ଛଡ଼ବେଦ ପର କରତା ହେ ଛେକି ରଖିବ ଆସି ।।୬୨।।

ଚାହିଁଅଛି ଗୁରୁଦେବଙ୍କୁ ଯେ ଚେତା ଯାଉଛି ହଜି, ଚଳୁନାହିଁ ବେନି ଚରଣ ହେ ପାପଦଶାରେ ମଜି ।।୬୩।।

ଅନୁକ୍ଷଣେ ଶୋକ ସଂତାପ ଯେ ଆନେ ନାହିଁ ମୋ ରକ୍ଷା, ଅନାଦିଗୁରୁ ଏକପାଦେ ହେ ମୋହ ଭରସା ଏକା ।।୬୪।।

ଘୋଟି ଆସୁଅଛି ବିପତ୍ତି ଯେ ଘନେ ବିଦ୍ୟୁ ପରାୟେ, ଘଟକୁ ରକ୍ଷା କରିବାକୁ ଯେ ମୋର ନାହିଁ ଉପାୟେ ॥୬୫॥

ଗୁରୁସ୍ୱାମୀ ମୋର ସାମର୍ଥ ଯେ ଗରୁଚିନ୍ତା ଫେଡ଼ିବ, ଜ୍ଞାନ ଖଡ଼୍‌ଗରେ ଛେଦିଲେ ଯେ ମାୟା ଜାଲ ଛିଡ଼ିବ ॥୬୬॥

ଖ୍ୟାତ ହେଉଅଛି ମହିମା ଯେ ନାମ କ୍ଷିତୀ ମଣ୍ଡଳେ, କ୍ଷୀରସିନ୍ଧୁ ବାସି ସମ୍ଭାଳ ହେ ମତେ ଏ କଳିକାଳେ ॥

କରତା ବୋଲାଇ ଏ ପିଣ୍ଡ ଯେ ବ୍ରହ୍ମାଣ୍ଡକୁ କରିଛ, ଭୀମ ଅରକ୍ଷିତ ଭଣିଲେ ଯେ ବାକ୍ୟ ନୁହଇ ମିଛ ॥୬୮॥

## ଦ୍ୱାଦଶ ଚଉତିଶା

କୃପାସାଗର ବାନାକୁ ନାହିଁ। କରଯୋଡ଼ି ଛାମୁରେ ଜଣାଇ। କରିଥିଲ ପରା ସତ୍ୟାଦି ଯୁଗ। ହେ ଗୁରୁଦେବ। କେତେ ଦିବସ ଯାଉଛି ବୋହି ହେ ॥୧॥

ଖୀନ ହଇଲେଣି ଭକ୍ତକୁଳ। ଖେଡ଼ଅଙ୍ଗେ ଜନମି ସକଳ। କ୍ଷମାଦି ସାଗର ଉଦେ ହୋଇଛ। ହେ ଗୁରୁଦେବ। ଖଟିହେଉ ଅଛନ୍ତି ବିକଳ ହେ ॥୨॥

ଜ୍ଞାନ କରିଅଛ ପରକାଶ। ଗଡ଼ିଯାଉଛନ୍ତି ଦାସୀଦାସ। ଗରବ ଗଞ୍ଜନ ବାନା ତୁମ୍ଭର। ହେ ଗୁରୁଦେବ। ଗତପତି କରତା ପୁରୁଷ ହେ ॥୩॥

ଘୋର ମାୟା ଅନ୍ଧାର ଜଗତେ ଘୋର ବନେ ଅଛନ୍ତି ଭଗତେ। ଘନଶ୍ୟାମ ମୂର୍ତ୍ତି ପ୍ରକାଶକର। ହେ ଗୁରୁଦେବ। ଘୁମିପଡ଼ି ଗଲେଣି ସମସ୍ତେ ହେ ॥୪॥

ଆଦି ଅନାଦି ମହିମା ହରି। ଅଛ ବାହ୍ୟ ଅଭ୍ୟାନ୍ତରେ ପୁରି। ଆତ୍ମା ଭଗତିରେ ହୃଦୟ ଗତେ। ହେ ଗୁରୁଦେବ। ଆଶା ଭରସା ପାଦ ସୁମରି ॥୫॥

ଚମକୁଛି ସପତ ବ୍ରହ୍ମାଣ୍ଡ। ଚମତ୍କାରେ ପୃଥ୍ୱି ନବଖଣ୍ଡ। ଚଉଦ ବ୍ରାହ୍ମାଣ୍ଡ ଏକୋଇଶ ପୁର। ହେ ଗୁରୁଦେବ। ଚରଣରେ ଲୋଟି ପ୍ରାଣ ପିଣ୍ଡହେ ॥୬॥

ଛଳି ଦେଉଅଛ କାହିଁ। ଛାଡ଼ିଗଲେଣି ନିରାଶ ହୋଇ। ଛଡ଼ବେଦ ବାସି ପ୍ରକାଶ ହୋଇଛ। ହେ ଗୁରୁଦେବ। ଛାଟ ପିଟାଉଛ ପାଖେ ଥାଇ ॥୭॥

ଜାଣି କରାଉଛ ନଟକୁଟ। ଯୁଗ ଲାଗିଅଛି ହଟପଟ। ଜଗତ କରତା ପ୍ରକାଶ ହୋଇଛ। ହେ ଗୁରୁଦେବ। ଜୀବମାନଙ୍କୁ ପଡୁଛି କଷ୍ଟ ହେ ॥୮॥

ଝଡ଼ି ଗଲାଣି ଚିନ୍ତାରେ ଦେହ। ଝରଝର ବହୁଅଛି ଲୁହ। ଝଟତିରେ ପୃଥୀ ଉଦ୍ଧରୀ ଧର। ହେ ଗୁରୁଦେବ। ଝାଡ଼ ଭୀତରୁ ଉଦ୍ଧରୀ ନିଅ ॥୯॥

ନିଷ୍କାମ ଯେ ମହିମା ଅଶେଷ। ନାରାୟଣ ଜଗତେ ପ୍ରକାଶ। ନିଶି ଦିବସରେ ଭଜନା କରି। ହେ ଗୁରୁଦେବ। ନିରନ୍ତରେ କରିଅଛୁ ଆଶ ॥୧୦॥

ଟଳ ଟଳ ହେଉଛି ମେଦିନି। ଟେକିରଖ ସେବା ଭକ୍ତି ଘେନି। ଟିଆକଣ୍ଟ ଦେଇ ଅଛ ଭକ୍ତଙ୍କୁ। ହେ ଗୁରୁଦେବ। ଟାକି ଅଛନ୍ତି ଆଜ୍ଞାକୁ ମାନି ॥୧୧॥

ଠାସ ବଚନ ଜଣା ନାହିଁ କି। ଠାରି କରି କହୁଛ ଯହିଁ କି। ଠାକୁର ବୋଲାଇ ଅଶେଷ ଭୁବନେ। ହେ ଗୁରୁଦେବ। ଠକି ଭଣ୍ଡୁଛ ଭୀମ ଭୋଇ କି ॥୧୨॥

ଡାଳ ଭାଙ୍ଗି ତଳେ ପଡୁଅଛି। ଡାକି ସାହସ ଉଡ଼ି ଯାଉଛି। ଡେଇଁ ଡେଇଁ ଏଣେ-ତେଣେ ପଳାଉଛ। ହେ ଗୁରୁଦେବ। ଡରି ଭୟରେ ଦିନ ଯାଉଛି ॥୧୩॥

ଢାଙ୍କୁଣି ଫିଟାଇଛ ଜଗତେ। ଢଳି ଢଳି ଚାଲୁଅଛ କେତେ। ଢାଲ ପ୍ରାୟେ ବାନା ଉଡୁଛି ସଂସାରେ। ହେ ଗୁରୁଦେବ। ଢଳି ପଡୁଛି ଅଣଆୟତେ ହେ ॥୧୪॥

ଅଣ ଅକ୍ଷର ଭଜୁଛୁ ଆମ୍ଭେ। ଅନ୍ତର୍ଗତେ ବୁଝିନିଅ ତୁମ୍ଭେ। ଅନୁମାନ କରି ଜଗତ ଠାକୁର। ଗୁରୁଦେବ। ଆସି ଦଣ୍ଡ ପଡୁଅଛି ଏବେ ହେ ॥୧୫॥

ତରତର ହେଉଅଛି ଚିତ୍ତ। ତତ୍‌ପରେ ବୁଝ ଅନାଦିତ। ତିନି ତଇଲୋକ ଅଶେଷ ବ୍ରହ୍ମାଣ୍ଡ। ହେ ଗୁରୁଦେବ। ତ୍ରୟଗୁଣରେ ହୋଇ ଯଂତ୍ରୀତ ହୋ ॥୧୬॥

ଥାନ ଆସନ ଛାଡ଼ିଲେ ସର୍ବେ। ଥିଲା କେବଣ ତପସ୍ୟା ପୂର୍ବେ। ଥେବିକାକୁ ଆଉ ବୁଦ୍ଧି ଦିଶୁ ନାହିଁ। ହେ ଗୁରୁଦେବ। ସ୍ଥିତି କର ପୃଥୀ ସର୍ବ ଶୁଭ ହେ ॥୧୭॥

ଦୁଃଖ ସହିନପାରେ ଏଥର ଦେହ ଜୀବ ହେଉଛି କାତର। ଦବଦବ ହୋଇ ଦିବସ ରଜନୀ। ହେ ଗୁରୁଦେବ। ଦୃଢ଼େ ଛାତିକି କରି ପଥର ॥୧୮॥

ଧରଣୀରେ ଲୋଟୁ ଅଛି ପିଣ୍ଡ। ଧାଇ ବସନ୍ତେ ବଢୁଛି ଦଣ୍ଡ। ଧରତୀ ଆକାଶ ସାକ୍ଷୀ ଅଛନ୍ତି। ହେ ଗୁରୁଦେବ। ଧରି କଚାଡୁ ଅଛନ୍ତି ମୁଣ୍ଡ ହେ ॥୧୯॥

ନାମେ ଜନମ ହେଲେ ଧରତି। ନର ଦେହେ ସର୍ବେ ରହିଛନ୍ତି। ନବଖଣ୍ଡ ମହି ଉଛୁଳୁ ଅଛି। ହେ ଗୁରୁଦେବ। ନାରୀମାନେ ହେବାରୁ ଭଗତି ହେ ।।୨୦।।

ପିଣ୍ଡ ଦୁର୍ଲ୍ଲଭ ଜନମପାଇ। ପାଦ ଛାଡ଼ିକେ ରଖିବ ଦେହି। ପ୍ରାଣ ପଛେ ଯାଉ ମହିମା ସାଗର। ହେ ଗୁରୁଦେବ। ପ୍ରୀତି ଚାରିଯୁଗେ ଥାଉରହି ହେ ।।୨୧।।

ଫୁଲାପଣିଆ ହେବାରୁ ମୁଁହି। ଫନ୍ଦାବୃତି ଜଣାଗଲା ନାହିଁ। ଫାଟିଯାଉଛି ମୋ ଅଦୃଷ୍ଟ କରମ। ହେ ଗୁରୁଦେବ। ଫୁଟି ଶୂନ୍ୟ ବାନା ଉଦେ ହୋଇ ହେ ।।୨୨।।

ବୃଦ୍ଧି ସରିଲାଣି କହୁଁ କହୁଁ। ବୁଝାମଣା ବେଗି ହଉ ହଉ। ବୀର ବଧୁବାନା ଉଡୁଛି ଜଗତେ। ହେ ଗୁରୁଦେବ। ବସା ଖଣ୍ଡେ ଦେବ ମହାବାହୁ ହେ ।।୨୩।।

ଭାସିଯାଉ ଅଛି ଭୀମଭୋଇ। ଭେଦମାର୍ଗ ମତେ ଜଣା ନାହିଁ। ଭରସା କରିଛି ଅଲେଖ ନାମକୁ। ହେ ଗୁରୁଦେବ। ଭବସଂସାର ସାଗରେ ଥାଇ ହେ ।।୨୪।।

ମନ ହେଉଅଛି ଛନଛନ। ମତେ ନ ଦିଶୁଛି ପାଦଚିହ୍ନ। ମହିମା ବିଜୟେ ଏ କଳିଯୁଗରେ। ହେ ଗୁରୁଦେବ। ମିଛ ନୁହେଁ ସଦ ବ୍ରହ୍ମଜ୍ଞାନ ହେ ।।୨୫।।

ଯୁଗ ଅଟେ ବଡ଼ ପରମାଦ। ଜାଣି ଧରି ନ ପାରୁଛି ପାଦ। ଜାଣି ଭଗତକୁ କଷଣ ଦେଉଛ। ହେ ଗୁରୁଦେବ। ଯାଉଛନ୍ତି ହଇ ଲଦ ବଦ ହେ ।।୨୬।।

ରଜ ତାମଶ ଗୁଣେ ଶରୀର। ରତି ପିରତିରେ ଚରାଚର। ରାଗ ଅହଂକାର ହୃଦରେ ପୁରୀ। ହେ ଗୁରୁଦେବ। ରକ୍ତ ମାଂସାରେ ପିଣ୍ଡ ସଂଚାର ହେ। ।।୨୭।।

ଲଘୁ ପାଇଲୁଣି ଆମ୍ଭେ ଯେତେ। ଲୋଭେ ଆଶାକରି ଅଛୁ ଚିତ୍ତେ। ଲାଳସା ବିଷୟା ସଂସାର ସାଗର। ହେ ଗୁରୁଦେବ। ଲଙ୍ଘିଯାଉଛୁ ଅଣଆୟତେ ହେ ।।୨୮।।

ବ୍ରହ୍ମ ନାମକୁ କରି ପସରା, ବେନିପାଦ ନ ଭଜି ଦୁସରା। ବାତୁଳ ହେଉଛୁ ମନ ଭିତରେ। ହେ ଗୁରୁଦେବ ବୁଲି ବୁଲି ନ ପାଉଛୁ ଧରା ହେ ।।୨୯।।

ସରିଗଲାଣି ଆମ୍ଭର ଚେତା, ସାରା ନ୍ୟାୟରେ ବୁଝ କରତା। ଶ୍ରମ କରି ଅଛୁ ଯେବଣ କାରଣେ। ହେ ଗୁରୁଦେବ। ସୁତ୍ରେ ବୁଝ ପୃଥିବୀ ଧରନ୍ତା ହେ ।।୩୦।।

ଶୂନ୍ୟପୁରୁଷ ଦୟା ନ କଲେ। ସ୍ୱାମୀ ଭାଷି ଯାଉ ଅଛୁଜଳେ, ସତ୍ୟାଦି ପୁରୁଷ ମହିମା ଉଦୟେ। ହେ ଗୁରୁଦେବ। ସଖା ହୁଅ ପ୍ରଭୁଏତେ ବେଳେ ହେ ।।୩୧।।

ଶୁଖି ଯାଉଅଛି ହିଆ ମୋର। ଶୋଇ ଉଠି କରୁଛି ବିଚାର। ସକଳ କଥାରେ ମହିମା ସାମର୍ଥ। ହେ ଗୁରୁଦେବ। ଶୁଭ କାର୍ଯ୍ୟରେ ଉଦ୍ଧରି ଧର ହେ ।।୩୨।।

ହିତ ମହିମା ସାଗର ହରି। ହେତୁ ତତ୍ତ୍ୱରେ ବୁଝ ବିଚାରି। ହରେକ କଥାକୁ ଅନାଦି ଜାଣିବ। ହେ ଗୁରୁଦେବ। ହାନିଲାଭ ବୁଝ ମନ କରି ହେ ।।୩୩।।

କ୍ଷମା ସାଗର ଖୀନ ମୂରତି। ଖେଳ ନିମନ୍ତେ ବିଜେ ଧରିତ୍ରୀ। କହେ ଭିମହୀନ ପାମର ଅଜ୍ଞାନ ଗୁରୁଦେବ। କ୍ଷିତି ଲୀଳା ଅଙ୍ଗେ ଚିତମତି ହେ ।।୩୪।।

## ତ୍ରୟୋଦଶ ଚଉତିଶା

ଖଣା ଭିତରେ ପଡ଼ିଛୁ ସବୁ। କ୍ଷିତି ମଣ୍ଡଳୁ ଉଦ୍ଧର ପ୍ରଭୁ। କ୍ଷୟେ ବୃଦ୍ଧି ନାହିଁ ଅଲେଖ ମହିମା। ହେ ଗୁରୁଦେବ। ଖେଳ କଳି ହଟପଟ ଯୋଗୁଁ ହେ ।।୩୫।।

ହାସ୍ୟ ନବର କଲେଣି ଲୋକ। ହସ୍ତ ବଢ଼ାଇ ନୁହଇ ସକ୍ଷ। ହାଟ ବସୁଅଛି ଦିବସ ରଜନୀ। ହେ ଗୁରୁଦେବ। ହାକି ଫିଟୁ ନାହିଁ ଆଉ ବାକ୍ୟ ହେ ।।୩୬।।

ସରିଗଲେଣି ଭଗତବୃନ୍ଦ। ଶୂନ୍ୟପୁରୁଷ ଅରୂପାନନ୍ଦ। ସୁମରି ସୁମରି ଅଭୟ ଚରଣେ ଗୁରୁଦେବ। ସ୍ଫୁରିନାହିଁ ସୁଧା ମକରନ୍ଦ ହେ ।।୩୭।।

ସଙ୍ଗସାଥି ସ୍ନେହ ଦୁର କଲୁ। ସ୍ୱାମୀ ବୋଲି ହୃଦରେ ଭଜିଲୁ। ସତ୍ୟାଦିପୁରୁଷ ଭଦେ ହୋଇଛ। ହେ ଗୁରୁଦେବ। ଶାସ୍ତି ପାଇପାଇ ଆମ୍ଭେ ମଲୁ ହେ ।।୩୮।।

ସର୍ବେ ନାମକୁ କରି ଭରସା। ଶିରିପାଦର ବିନ୍ଦରେ ଆଶା। ଶବର ପରାୟେ ବ୍ରହ୍ମାଣ୍ଡେ ବୁଲି ହେ ଗୁରୁଦେବ। ସାର ହେଉ ନାହିଁ ସ୍ଥିତି ବସା ହେ ।।୩୯।।

ବାଟଦାଣ୍ଡ ଛେକୁଛନ୍ତି ଲୋକେ। ବସା ନାହିଁ ମିଳୁଅଛି ଟିକେ। ବସିବାକୁ ନାହିଁ ପାଶ ଅନ୍ତରେ ହେ ଗୁରୁଦେବ। ବାରି ହେଉଛନ୍ତି ତାଙ୍କ ସୁଖେ ହେ ।।୪୦।।

ଲଘୁ ଦେଉଛ କାହିଁ; ମତେ। ଲୋଭ ମୋହେ ଡକାଇ ଅଚେତେ। ଲକ୍ଷେ ଯୁଗ ବହିଗଲାଣି ଏପରି। ହେ ଗୁରୁଦେବ। ଲାଭ ବଣିଜ କହିବି କେତେ ହେ ।।୪୧।।

ରବି ତଳରେ ଜନମପାଇ। ରସାମେଦନୀରେ ଅଛି ରହି। ରୋଦନ କରୁଛି ଦିବସ ରଜନୀ। ହେ ଗୁରୁଦେବ। ରଇରଗଦେ ଚିନ୍ତାର୍ଥୀ ହୋଇ ହେ ।।୪୨।।

ଯାଗ୍ରତରେ ଉଦ୍ଧର ବ୍ରହ୍ମାଣ୍ଡ। ଯତନରେ ପୃଥ୍ୱୀ ନବଖଣ୍ଡ। ଯୋଗୀ ବେଶଧାରୀ ଅଛ କଳିଯୁଗେ। ହେ ଗୁରୁଦେବ। ଜାଣିସ୍ଥାପ ଧୂନୀକୁଣ୍ଡେ ହେ ॥୪୩॥

ମନ ବାୟା ହେଲାଣି ସବୁରୀ। ମାନି ପ୍ରତିଦିନେ ସେବାକରି। ଭଣେ ଭୀମହୀନ ପାମର ଅଜ୍ଞାନ ଗୁରୁଦେବ। ମହିମାଙ୍କ ପାଦବିନ୍ଦ ଧରି ହେ ॥୪୪॥

ଭାସିଯାଉଛନ୍ତି ଭକ୍ତକୁଳ। ଭାରା ଉସ୍ୱାସି କର ସମ୍ଭାଳ। ଭୟ ଲାଗୁଅଛି ମନକୁ ଆମ୍ଭର ଗୁରୁଦେବ। ଭାଣ୍ଡ ଅଟେ ଯୁଗ କଳି କାଳ ହେ ॥୪୫॥

ବିନତୀ କରି ମୁଁ କହୁଅଛି। ବାକ୍ୟ ଘେନିବା ହୁଅନ୍ତୁ କିଛି। ବସି କାନ୍ଦୁଅଛୁ ମୁଖେ ଲୁଗାଦେଇ। ହେ ଗୁରୁଦେବ। ବେନି ନୟନରୁ ଲୁହପୋଛି ॥୪୬॥

ଫଯୁଟି ଅଛି ଜଗତରେ ନାମ। ଫେଡ଼ିଦେଇଛ ଧର୍ମ ନିଷ୍କାମ। ଫିଙ୍ଗିଦେଇ ଅଛ ଅନାଦର କରି। ହେ ଗୁରୁଦେବ। ଫାଟି ଅଦୃଷ୍ଟ ହେଉଛି ବାମ ହେ ॥୪୭॥

ପୁତ୍ରମାନେ ପାଉଛନ୍ତି ଦୁଃଖ। ପଥ ଶ୍ରମ ହୋଇଲେଣି ଦେଖ। ପ୍ରାଣ ଛାଡ଼ିବାକୁ ହେଲାଣି ଶରୀର ଗୁରୁଦେବ। ପାଦେ ପଡ଼ି କହୁଛୁ ଅନେକ ହେ ॥୪୮॥

ନାଶା ପର୍ଯ୍ୟନ୍ତେ ହେଲାଣି ଜଳ। ନାବ ବୁଡୁଛି ନଳଣୀକୁଳ। ନିଷ୍ଠା ଧରମକୁ ଆଶ୍ରୟ କରି ହେ ଗୁରୁଦେବ। ନାହିଁ ନ ମିଳୁଛି କିଛି ଫଳ ହେ ॥୪୯॥

ଧର୍ମ ପରମାଣେ ବୁଝ କଥା। ଧୁବି ଅଙ୍ଗକୁ କଲାଣି ବ୍ୟଥା। ଧକ ଫୁଟିଲାଣି ଦେହରୁ ଆମ୍ଭର। ହେ ଗୁରୁଦେବ। ଧାଇଁଧାଇଁ ହୋଇଲୁଣି ଥକା ହେ ॥୫୦॥

ଦାଉସହି ନ ପାରୁଛି ଜୀବ। ଦେବ କେତେବେଳେ ସିନା ଭୋଗ। ଦରିଦ୍ରପ୍ରାଣୀର ଦୁଃଖି ଜନବନ୍ଧୁ। ହେ ଗୁରୁଦେବ ଦୟାବନ୍ତରେ ଉଦ୍ଧରୀ ନେବ ହେ ॥୫୧॥

ଥେବ ନ ହଉଛି କ୍ଷଣେ ଦଣ୍ଡେ। ଥାବର ଭାଞ୍ଜି ପଡୁଛି ମୁଣ୍ଡେ। ଥରଥର ହଇ ପଞ୍ଚଭୁତ ଆତ୍ମା। ହେ ଗୁରୁଦେବ। ଥୋକେ ଜୀବ ରହୁ ନାହିଁ ପିଣ୍ଡେ ହେ ॥୫୨॥

ତରତର ହେଉଅଛି ମୁହିଁ। ତିଳେଦଣ୍ଡେ ମତେ ସୁସ୍ଥ ନାହିଁ। ତରଙ୍ଗ ପରାୟେ ଅକାଳ ଚଡ଼କ। ହେ ଗୁରୁଦେବ। ତାନ ପଡୁଛି ନୁହଇ ସହି ହେ ॥୫୩॥

ଅଣାକାର ଗୁରୁ ମହାମେରୁ। ଅଣକୃପା ମତେ କରିବାରୁ। ଅନେକ ଅବସ୍ଥା ପଡୁଅଛି ମୋତେ। ହେ ଗୁରୁଦେବ। ଅନ୍ତର୍ଗତେଦୟା ନୋହିବାରୁ ହେ ॥୫୪॥

ଢୁକିଲାଣି ଅକାଳ ବିପତ୍ତି। ଢାଙ୍କି ମାରୁଅଛ ନବପୃଥୀ। ଢିକି ଢିକି ମାଡ଼ ବରଷି ଯାଉଛି। ହେ ଗୁରୁଦେବ। ଢାଳ ପ୍ରାୟେ ବାନା ଉଡ଼ି ପୃଥୀ ହେ। ॥୫୫॥

ଡାକ ପଡୁଅଛି ସ୍ୱର୍ଗ ମର୍ତ୍ତ୍ୟେ। ଡାକି ଜଣାଉ ଅଛି ନିରତେ। ଭୀମ ଅରକ୍ଷିତ ଛାମୁରେ କହୁଛି। ହେ ଗୁରୁଦେବ। ଡାକୁଅଛି ଶ୍ରୀଗୁରୁଙ୍କୁ ଚିତ୍ତେ ହେ ॥୫୬॥

ଠେଲି ସିନ୍ଧୁରେ ଯାଉଛି ଭାସି। ଠିକ କର ବୁଝ ବ୍ରହ୍ମରାଶି। ଠାବ ନ ମିଳୁଛି ତିନି ତ୍ରଲକ୍ୟରେ ହେ ଗୁରୁଦେବ। ଠିଆ ହୋଇଛି ଛାମୁରେ ଆସି ହେ ॥୫୭॥

ଟେକିଅଛ ଅବଧୂତବାନା। ଟେଳା ପର୍ବତକୁ ବଜ୍ରସେନା ଟିକାକର କଥା ଚାରିଯୁଗମତେ। ହେ ଗୁରୁଦେବ। ଟଳି ପଡୁଅଛି ହୋଇବଣା ହେ ॥୫୮॥

ନିରନ୍ତରେ କରୁଛି ଗୁହାରୀ, ନିତ୍ୟେ ପାଦବିନ୍ଦ ଅନୁସରି। ନିଶି ଦିବସରେ ଭାଳେଣି ପଡୁଛି। ହେ ଗୁରୁଦେବ। ନାମ ନିର୍ଗୁଣକୁ ଭଜିକରି ହେ ॥୫୯॥

ଝାଡ଼ ଭିତରେ ପଡ଼ିଛି ମୁହିଁ। ଝଟତିରେ ବୁଝ ମହିମାହି। ଝେଞ୍ଜାକା ଭିତରୁ ଉଦ୍ଧରୀ ନିଅ। ହେ ଗୁରୁଦେବ। ଝଟତିରେ ପରବେଶ ହୋଇ ହେ ॥୬୦॥

ଯତିବେଶେ ଅବତାର ହୋଇ। ଜନ ଜଗତେ ଜାଣିବେ କାହିଁ। ଜାତ କରିଅଛ ପୃଥିବୀ ମଣ୍ଡଳେ। ହେ ଗୁରୁଦେବ। ଯୁଗେ ଯୁଗେ କବି ପଦଦେଇ ହେ ॥୬୧॥

ଛନ୍ଦି ଅଛି ନିରମୁଳିଲତା। ଛଟା ଉପୁଜୁଛି କେତେ କଥା। ଛାଡ଼ିଯାଉ ପଛେ ପିଣ୍ଡରୁ ପରାଣ। ହେ ଗୁରୁଦେବ। ଛଡ଼ବେଦବାସୀଠାରେ ଚିନ୍ତା ହେ ॥୬୨॥

ଚଉଦିଗ ହେଉଛି ଅନ୍ଧାର। ଚାହିଁଦେଲେ ଦିଶେ ଅନ୍ଧକାର। ଚନ୍ଦ୍ର ପ୍ରାୟେ ଉଇଁ ଅଛି ପାଦବିନ୍ଦ। ହେ ଗୁରୁଦେବ। ଚିନ୍ତି ବୁହାଉଛ ମତେ ଭାର ହେ ॥୬୩॥

ଅନୁସରି ରହିଛୁ ଆଶାକୁ। ଅଣାକାର ଶ୍ରୀମୁଖ ଭାଷାକୁ। ଆଣି ଏତେ ସରି କଲାଣି ଦଇବ। ହେ ଗୁରୁଦେବ। ଆସି ଫେଡ଼ ଅଖିଳ ଦଶାକୁ ହେ ॥୬୪॥

ଘଟ ଛାଡ଼ିବା ପ୍ରାୟେ ହେଲାଣି। ଘେନି ଜୀବନ ଯମନେଲାଣି। ଘଡ଼ଘଡ଼ି ନାଦ ଘନ ଘନ ରଡ଼ି। ହେ ଗୁରୁଦେବ। ଘାତେ କମ୍ପିଗଲାଣି ମେଦିନୀ ହେ ।।୬୫।।

ଙ୍କାନ ହଜୁଛି ଅଣଆୟେତେ। ଗୁରୁଦେବ ବିଜୟେ ଜଗତେ। ଗଡ଼ିଯାଉଛନ୍ତି ଧୂଳି ପାଉଁଶରେ। ହେ ଗୁରୁଦେବ। ଗତିମୁକ୍ତି ପାଇବା ନିମନ୍ତେ ହେ ।।୬୬।।

ଖଣ୍ଡ ଖଣ୍ଡ ହୋଇଗଲାଣି ତନୁ। କ୍ଷଣେ ପାସୋରୀ ନୁହଇ ମନୁ। କ୍ଷୀରାର୍ଣ୍ଣବ ଏବେ ମନେ ପଡୁଅଛି। ହେ ଗୁରୁଦେବ। କ୍ଷିତି ମଧ୍ୟେ ଜନ୍ମ ହୋଇଲା ଦିନୁ ହେ ।।୬୭।।

କୃପାସାଗର କରତା ହରି। କାକୁସ୍ତରେ ନେବ ପାରିକରି। କହେ ଭୀମ ହୀନ ଅଭୟଚରଣେ। ହେ ଗୁରୁଦେବ। ଛାମୁ ଆଜ୍ଞା ଶିର ପରେ ଧରି ହେ ।।୬୮।।

## ଚତୁର୍ଦ୍ଦଶ ଚଉତିଶା- ବ୍ରହ୍ମାଣ୍ଡ ପାଇଁ ପ୍ରାର୍ଥନା
### (‘କ୍ଷ’ଠାରୁ ‘କ’ ପର୍ଯ୍ୟନ୍ତ)

କ୍ଷିତି ମଣ୍ଡଳ ପୋଡ଼ି ଜଳି ଗଲାଣି ଖାର ଧୂଳିହୋଇ ଅନାଦି, ଖଣ୍ଡନ କର ମେଦିନୀ ଭାରାଭାର ପ୍ରଭୁତ କରୁଣା ବାରାଧି। ସ୍ୱାମୀ ହେ।

କ୍ଷମାକର ଦୁଃଖ ବାରେକ। ନିର୍ଗୁଣ ସତ୍ୟ ଧର୍ମ ଉଦେ ହୋଇଛି ମହାଘୋର, କଳି କାଳକ ।।୩୫।।

ହିଙ୍ଗୁଳ ବରଷୁଅଛି ତିନିପୁର ହୁକୁମେକର ପରିତ୍ରାଣ। ହିତକାରୀ ପ୍ରଭୁଥାଇ ଥାଇକରି କାହିଁକି ହେଉଛି ଏ ମାନ। ସ୍ୱାମୀ ହେ। ହର ହର ପାପରାଶିକି, ସଂସାର ନିମନ୍ତେ ଜଣାଣ କରୁଛି ଶୂନ୍ୟ ବଇଖୁଣ୍ଟ ବାସିକି ।।୩୬।।

ସବୁ ଏକାବେଳେ ଦହନ କରୁଛି ସମେଦ ଖପରେଦହନ। ସମ୍ଭାଳ ଏବେ ଶୂନ୍ୟ ବ୍ରହ୍ମପୁରୁଷ, ଯେମନ୍ତେ ରହିବେ ବିହନ। ସ୍ୱାମୀ ହେ। ସର୍ବ କରଣୀ କାଟ ଯାଉ। ଅଲେଖ ମହିମା ନାମ ଯେବେ ସତ୍ୟ ପିଣ୍ଡ ବ୍ରହ୍ମାଣ୍ଡ ରହିଥାଉ ।।୩୭।।

ସଂସାରେ ଆସି ଶନିଶ୍ଚର ଘୋଟିଛି ରକ୍ଷାକର ବାନା ଘୋଡ଼ାଇ। ଶରଣ ସମ୍ଭାଳି ମୋକ୍ଷକର ଏବେ ଗ୍ରହକେଳଷକୁ ଛଡ଼ାଇ। ସ୍ୱାମୀ ହେ। ଶୁଭ ଅନୁକୂଳ ପ୍ରକାଶ। ଅଲେଖ ପୁରୁଷ ଅନ୍ତର୍ଗତେ ଜାଣି ରଖ ଏ ଧରତୀ ଆକାଶ ।।୩୮।।

ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଭାଜି ପଡ଼ୁଛି ଶ୍ରୀବନ୍ତ ଯାଉଛି ଛାଡ଼ି। ସୁରନର କୀଟ ପତଙ୍ଗ ସହିତେ ରଖ ପୟର ତଳେ ମାଡ଼ି। ସ୍ୱାମୀ ହେ। ସରବ ଜାମେନି କରତା। ଶୂନ୍ୟବାସୀ ବିନୁ ଏ ପିଣ୍ଡ ବ୍ରହ୍ମାଣ୍ଡ କେହି ନ ଦିଶନ୍ତି ରଖନ୍ତା ॥୩୯॥

ବ୍ରହ୍ମ ପ୍ରଳୟରେ ବ୍ରହ୍ମାଣ୍ଡ ଭାସୁଛି ବୁଡି ଯାଇ ପାପ ସାଗରରେ। ବହି କରୁଣା ନିଷ୍କାମ ହୃଦରେ ଛାଣିନେଇ ରଖ ତୀରରେ। ସ୍ୱାମୀ ହେ। ବାରେକ ବଞ୍ଚାଅ ବ୍ରହ୍ମାଣ୍ଡ। ନିବାରକର କାଳ ରାହୁ ଦଶାକୁ ଆନନ୍ଦ ଲଭୁ ନବଖଣ୍ଡ ॥୪୦॥

ଲଘୁଦଶା ପଡ଼ିଲାଣି ଏ ପୃଥୀରେ ଲାଗିଲାଣି ଆସି ସମୟ। ଲିଖପ୍ରାୟେ କରି ଅଶେଷ ଭୁବନ ନଖକେଣେ ପ୍ରଭୁ ଲୁଚାଅ। ସ୍ୱାମୀ ହେ। ଲାବଣ୍ୟ ମୁରତି ସୁନ୍ଦର ଅକାଳବିପତ୍ତି ଭୂତ ଭବିଷ୍ୟକୁ କ୍ଷୟେ କରି ମହି ଉଦ୍ଧର ॥୪୧॥

ରସାମଣ୍ଡଳେ ରୁଧୀର ବରଷୁଛି ହେଉଛି ଅଦଭୁତ ମାୟା। ବ୍ରହ୍ମ ନାମ ପଦେ ରକ୍ଷାକର ସ୍ୱାମୀ ଅନ୍ତର୍ଗତେ ବହି ସୁଦୟା। ସ୍ୱାମୀ ହେ। ରୋପୀଛ ଯେବେ ବ୍ରହ୍ମାଣ୍ଡକୁ। ନାଶ ଯାଉ ବୋଲି ନ ଚାହିଁବ କେବେ ନିନ୍ଦା ସିନା ହେବ ପ୍ରଭୁଙ୍କୁ ॥୪୨॥

ଯାଉଛନ୍ତି ଭାସି ଜଗତ ଭଗତ ଅକାରଣ ହୋଇ ସମସ୍ତେ। ଜାଗ୍ରତରେ ରଖ ଅଭୟ ପଞ୍ଝରେ ବିପତ୍ତି ନାହିଁ ହାବୋଡ଼ନ୍ତେ। ସ୍ୱାମୀ ହେ। ଯୋଗୀନ୍ଦ୍ର ବେଶ କଳିଯୁଗେ। ସତ୍ୟ କର୍ମ ଯେବେ ସ୍ଥାପନ କରିଛ ସେ ଧର୍ମେ ରକ୍ଷାକର ବେଗେ ॥୪୩॥

ମହୀମଣ୍ଡଳ ଖରାପ ହେଉଅଛି କାଳିକା ଯୋଗରୁ ଏମାନ। ମହିମା ସାଗର ଉଦି ଅଛ ଯେବେ ଛେଦ ବିପତ୍ତି ଘନ ଘନ। ସ୍ୱାମୀ ହେ। ଭୀମ ଅରକ୍ଷିତ କହୁଛି। ଭବ ଶାନ୍ତିପାଠ ଥିବାରୁ ସଂସାରେ ଏତେ ଉପଦ୍ରବ ହେଉଛି ॥୪୪॥

ଭାଗୀ ଯାଉଛନ୍ତି ଚାରିଖାନି ଜୀବ ଭୟପାଇ ପଞ୍ଚୁ ମନରେ। ଭାରାକୁ ଭସ୍ୱାସୀ ତ୍ରାହିକର ସ୍ୱାମୀ ଭୁଜଟେକି ମହାଶୂନ୍ୟରେ। ସ୍ୱାମୀ ହେ। ଭବ ଶାନ୍ତି ଯେତେ ତାଲିକା। ମେରୁ ପ୍ରାୟେ ଅଛି ରେଣୁ ପ୍ରମାଣରେ କାଟଯାଉ ସବୁ ମାଳିକା ॥୪୫॥

ବହୁତ ପ୍ରମାଦ ହେଲାଣି ପୃଥୀରେ ବୋବାଇଲେଣି ସର୍ବଜୀବ। ବସା ଦେଇ ପ୍ରଭୁ ସକଳ ସମ୍ଭାଳ ନ ପଡୁ ଏ ଦଶା ଦୁର୍ଯୋଗ। ସ୍ୱାମୀ ହେ। ବିନତୀ କରୁଛି ଛାମୁରେ। ବ୍ରହ୍ମାଣ୍ଡରେ ଯେତେ ବିପତି ପଡୁଛି ଲୀନକର କୋଠ ଭଣ୍ଡାରେ ॥୪୬॥

ଫନ୍ଦା ଭାଙ୍ଗିଯାଇ ଫଳ ଊଣା ହୋଇ ଅବସ୍ଥା ହେଲାଣି ସଂସାର। ଫେଡ଼ ସଙ୍କଟ ଦରିଦ୍ର ଦୁଃଖ ଯାଉ ସମସ୍ତେ ପାଆନ୍ତୁ ଆଧାର। ସ୍ୱାମୀ ହେ। ଫୁଲରି ହୋଇଲା ଗୋପ୍ୟାନ। ଚବିଶ ଅଙ୍କକୁ କଟିଗଲା ପ୍ରଭୁ ଚବିଶ ଭରଣ ବିହନ ॥୪୭॥

ପୋଡ଼ିଯାଉଅଛି ଚଉଦ ଭୁବନ ପଡ଼ିଆ ଦିଶୁଛି ନେତ୍ରରେ। ପୂର୍ଣ୍ଣାନନ୍ଦ ସ୍ୱାମୀ ଅନଳ ଲିଭାଅ ଢାଙ୍କିରଖ ପୂର୍ଣ୍ଣ ପତ୍ରରେ। ସ୍ୱାମୀହେ। ପୁରିଣ ରହିଛି ଜଗତେ। ଶଂଖୁଳି ରଖ ଛପ୍ପନ୍ନକୋଟି ଜୀବକୁ କାରଣ ପାଆନ୍ତୁ ସମସ୍ତେ ॥୪୮॥

ନବ ଖଣ୍ଡ ପୃଥୀ ଓଟାରି ନେଉଛି ପାପ ଘୋର କଳିପୁରୁଷ, ନାବ ଲଗାଇ ଛଡ଼ାଇ ଆଣ ଏବେ ସମ୍ଭାଳି ରଖ ଦଶଦିଶ। ସ୍ୱାମୀ ହେ। ନୟନରେ ଦେଖ ଅନାଇ। ତିନି ବ୍ରାହ୍ମାଣ୍ଡକୁ ବାନ୍ଧି କଳିଯୁଗ ଧରିଲାଣି ହସ୍ତେ ଉଳାଇ ॥୪୯॥

ଧରତୀ ଆକାଶ ଧର୍ମକର୍ମ ସବୁ ମୁଟୁରାରେ ବାନ୍ଧି ନେଉଛି। ଧର୍ମରାଜ ପ୍ରଭୁ ଧାଇଁ ଧରିଛେକ ଲୁଚି ଲୁଚି କଳିଯାଉଛି। ସ୍ୱାମୀ ହେ। ଧର କଳି ଯୁଗ ଚୁଟିକି। ନିର୍ବନ୍ଧରେ ବାନ୍ଧି ମାଡ଼ମାର ତାକୁ ଶ୍ରୀପୟରେ ଯାକ ତଣ୍ଟିକି ॥୫୦॥

ଦହିର୍ଜ୍ୟ ହେଉଛି ପାଉଁଶ ଉଡୁଛି ଦୁର୍ଭୀକ୍ଷ ପଡୁଛି ଏଥର। ଦୟାବନ୍ତ ସ୍ୱାମୀ ଦରିଦ୍ର ଦୁଃଖକୁ ତିନି ଭୁବନରୁ ନିବାର। ସ୍ୱାମୀ ହେ ଦୁରାକଷ୍ଟ ଆସି ପଡ଼ିଲା। ଅନ୍ତର୍ଯାମୀ ପ୍ରଭୁ ନ ଚାହିଁବ ଯେବେ ନିଶ୍ଚୟ ବ୍ରହ୍ମାଣ୍ଡ ନାଶିଲା ॥୫୧॥

ଥରିଯାଉ ଅଛି ସପତ ବ୍ରହ୍ମାଣ୍ଡ ଥୟ ନ ରହୁଛି ଦମ୍ଭରେ। ସ୍ଥିତି ଦେଇ ସ୍ୱାମୀ ବସୁନ୍ଧରା ମହୀ ରକ୍ଷାକର ନାମ ବ୍ରହ୍ମରେ ସ୍ୱାମୀ ହେ ଥୋଇଅଛ ଯେବେ ଧର୍ମକୁ। ଏକୋଇଶପୁର ଭକ୍ଷି ପକାଉଛି କ୍ଷୟକର ମହାପାପକୁ ॥୫୨॥

ତ୍ରିଗୁଣର ମାୟା ତିନି ତ୍ରଲୋକ୍ୟକୁ ଘାରିଅଛି ଚେତା ବୁଡ଼ାଇ। ତୁଣ୍ଡରେ ଧରି ଗଳିଦିଏ ନିଅ ତତକ୍ଷଣେ ଛଡ଼ାଇ। ସ୍ୱାମୀ ହେ। ତିୟାରୀ କହୁଛି ଛାମୁରେ। ତପତ ମୁଖିକି ଅଣ୍ଡାକର ସ୍ୱାମୀ ଅଲେଖ ମହିମା ନାମରେ ॥୫୩॥

ଅନଳ ଲାଗି ଗଲାଣି ଚାରି ଦିଶେ ଅଗ୍ନିସର ପରା ଖାଉଛି। ଅଣାକାର ସ୍ୱାମୀ ଆଣିଜଳ ମୁଠେ ସିଞ୍ଚିଦେଲେ ଯାଇ ହେଉଛି। ସ୍ୱାମୀ ହେ ଅନନ୍ତ କୋଟି ବ୍ରହ୍ମାଣ୍ଡକୁ ଘଡ଼ି ଗୋଟାକରେ ଜାଳି ପକାଉଛି ଘିଅ ରଖକର ତଳକୁ ॥୫୪॥

ଢଳି ପଡୁଅଛି ମେରୁ ଗିରୀ ଦୃମ ଢାଙ୍କିଲାଣି ତାର ଆୟତେ । ଢାଲ ବାନା ଆଡ଼ି ଧାଡ଼ିରେ ବଞ୍ଚାଅ ବିହନ ରହିବେ ସମସ୍ତେ। ସ୍ୱାମୀ ହେ। ଢ଼େଲ ପ୍ରାୟେ କାନି ପଣତେ। ପିଣ୍ଡ ବ୍ରହ୍ମାଣ୍ଡକୁ ଗଣ୍ଡାଇ ନେଉଛି ଦେଖ ଦେଖ ପ୍ରଭୁ ସାକ୍ଷାତେ ॥୫୫॥

ଡାକେଶ୍ୱରୀ ମାଈ ମହାକୋପ ହୋଇ ଢାଙ୍କି ପକାଉଛି ସବୁକୁ। ଡୋଳେ ଦେଖି ମୋତେ ବିକଳ ଲାଗୁଛି ଡାକି ଜଣାଉଛି ପ୍ରଭୁଙ୍କୁ। ସ୍ୱାମୀ ହେ ଭୀମ ଅରକ୍ଷିତ କହୁଛି। ଅବନା ମନ୍ଦିରୁ ସିଂହାସନ ତେଜି ବିଜେ କଲେ ଯାଇ ହେଉଛି ॥୫୬॥

ଠହର ନ ଦିଶେ ଧରତୀ ଆକାଶେ ଠାବମାନ ଭାଙ୍ଗି ଯାଉଛି। ଠିକ ସମୟକୁ ଠାକୁର ନୋହିଲେ କେଉଁ ଜନରକ୍ଷା କରୁଛି। ସ୍ୱାମୀ ହେ ଠଣା ମାରୁଅଛି ମଥାରେ। ଏହି କଳିଯୁଗ ବଳେ ବଳିୟାର ଖୋସିଦିଅ ନେଇ ବତାରେ ॥୫୭॥

ଝାଡ଼ି ପକାଉଛି ଅଶେଷ ବ୍ରହ୍ମାଣ୍ଡ ଅଧର୍ମ ଅକର୍ମ ପାପରେ। ଟେକି ଧର ପ୍ରଭୁ ନବଦ୍ୱୀପ ମହୀ ଉଡ଼ିଯାଉ ମହାଶୂନ୍ୟରେ। ସ୍ୱାମୀ ହେ ଟାଣ ପ୍ରଭୁ ଅଟ ମୋହର। ଏ ପିଣ୍ଡବ୍ରହ୍ମାଣ୍ଡ କାହାରି ନୁହଇ ସବୁଯାକ ସିନା ତୁମ୍ଭର ॥୫୮॥

ନିଶି ଦିବସରେ ଅଜ୍ଞାନ ଆଚାରେ ନାଶି ପକାଉଛି ମିଥ୍ୟାରେ। ନାରାୟଣ ପ୍ରଭୁ ନିଷ୍କାମ ଧର୍ମରେ ରକ୍ଷାକର ପୃଥୀ ସତ୍ୟରେ। ସ୍ୱାମୀ ହେ, ନିର୍ଘାତ ବିପତି ପଡୁଛି। ଏ କଳିକାଳରେ ଏକାବେଳେ ପ୍ରଭୁ ଚାରିଯୁଗ ସଂଖ୍ୟା ଛିଡୁଛି ॥୫୯॥

ଝାଞ୍ଜି ପବନ ଅଣଚାଷ ବହୁଛି ଝାଙ୍କି ପକାଉଛି ତପତି। ଝଟତିରେ ପ୍ରଭୁ ବ୍ରହ୍ମାଣ୍ଡ ସମ୍ଭାଳ ଝେଞ୍ଜିକାକୁ ଛେଦ ନିପାତି। ସ୍ୱାମୀ ହେ। ଝଡ଼ି ପଡୁଛନ୍ତି ସକଳ। ଦୟାବନ୍ତ ସ୍ୱାମୀ ଚାହିଁ ଦେଖି ଥରେ ଦିଅ ସୁକଲ୍ୟାଣ ମଙ୍ଗଳ ॥୬୦॥

ଯୁଗ ଶେଷ ଜାଣି ପ୍ରବଳିତ ହୋଇ ଯୋଗ୍ନୀ ଉଠିଲେଣି ମଣ୍ଡଳ । ଯୋଗେଶ୍ୱର ସ୍ୱାମୀ ପ୍ରତିବୋଧ କରି ଦୟାରେ ଏହାକୁ ସମ୍ଭାଳ । ସ୍ୱାମୀ ହେ। ଯାଗୀଧର ଏହି ସଂସାର । ଭବସିନ୍ଧୁ ଜଳେ ଭାଷିଯାଉଛନ୍ତି ଲଗାଇ ବସାଅ ନାବର ॥୬୧॥

ଛାନିଆଁ ହେଲେଣି ଛପ୍ପନକୋଟି ଜୀବ ବୁଡିଗଲାଣି ହେତୁଚେତା। ଛଡ଼ବେଦ ବାସି ଛତ୍ରତଳେ ରଖ ସକଳ ଜୀବର କରତା। ସ୍ୱାମୀ ହେ ଛାଣି ରଖ ପାପ ସାଗରୁ। ବ୍ରହ୍ମାଣ୍ଡର ଦୋଷ କ୍ଷମାକର ପ୍ରଭୁ ପାରିକର କଳିଯୁଗରୁ ॥୬୨॥

ଚମକି ଯାଉଛି ମେଦାମେଦ ପୃଥୀ ଚାପି ଆସୁଅଛି ଦୁରିତ। ଚିରାନନ୍ଦ ସ୍ୱାମୀ ଶୂନ୍ୟବାନା ଆଡ଼ି ଦୟାକ୍ଷମା କର ତୁରିତ। ସ୍ୱାମୀ ହେ ଚାହିଁ ଦିଅ କୃପା ନେତ୍ରରେ। ମିଥ୍ୟା ପାପଯେତେ ସବୁ ଉଡ଼ିଯାଉ ଉଦ୍ଧର ପୃଥୀକୁ ସତ୍ୟରେ ॥୬୩॥

ଉଲ୍‌କାପାତ ହଇଲାଣି ବ୍ରହ୍ମାଣ୍ଡ ଉଡ଼ିଯାଉଅଛି ବତାଶେ। ଅନନ୍ତ ପୁରୁଷ ଥୟ କରି ରଖ ଅଧୀନେ ଶ୍ରୀକର ପାରୁଶେ। ସ୍ୱାମୀ ହେ ଅନ୍ତର୍ଯ୍ୟାମୀ ପ୍ରଭୁ ଆପଣ। ଭୋଗଯୋଗ ଶିକ୍ଷା ଦୀକ୍ଷା ଦେଇଅଛ ଭିଆଣ କରିଛ ଭାବନା ॥୬୪॥

ଘଟ ପ୍ରଳୟରୁ ବ୍ରହ୍ମାଣ୍ଡ ପ୍ରଳୟ ଘୋଟିଗଲାଣି ଦଶଦିଶ। ଘୋଡ଼ାଇ ବାନାକୁ ପାପରୁ ବଞ୍ଚାଅ ଅଣରୂପ ଶୂନ୍ୟପୁରୁଷ। ସ୍ୱାମୀ ହେ, ଘରଦ୍ୱାର ପୋଡ଼ିଗଲାଣି। ଅଶେଷ ଭୁବନେ ଅଗ୍ନିମୟେ ଦିଶି ଧୂର୍ମବର୍ଣ୍ଣ ପ୍ରାୟେ ହେଲାଣି ॥୬୫॥

ଗଡ଼ିଯାଉଛନ୍ତି ଜନପ୍ରାଣୀମାନେ ଗ୍ରୀସମ ତପତି ଘାତରେ। ଗୁରୁଦେବ ସ୍ୱାମୀ ଗାଢ଼ ବିପତି କି ଫିଙ୍ଗିଦିଅ ଆପେ ହସ୍ତରେ। ସ୍ୱାମୀ ହେ ଗଲାଗଲା ଏହି ସଂସାର। ଏଣୁ କରି ସିନା ପ୍ରଭୁ ଶ୍ରୀଛାମୁରେ ପକାଉଛି ନେଇ ଇଝାର ॥୬୬॥

ଖଳବଳ ହୋଇଲାଣି ତିନିପୁର କ୍ଷୟେ ଗଲେଣି ସର୍ବଜନ। ଖଣ୍ଡନ କରି ମେଦନୀ ପାପଭରା ଫେଡ଼ ସଙ୍କଟ ଅଭିମାନ। ସ୍ୱାମୀ ହେ, କ୍ଷମା ବହିକର କାରଣ। ବ୍ରାହ୍ମାଣ୍ଡ ନିମନ୍ତେ ଅଲେଖ ମଣ୍ଡଳେ ଲାଗିଅଛି ଅନୁସରଣ ॥୬୭॥

କଳିଯୁଗ ମଧ୍ୟେ କାନ୍ତାଳ ପଡ଼ିଲା ଫଳମୂଳ ଉଡ଼ିଯାଉଛି। କରତା ପୁରୁଷ ଅଲେଖ ଭଣ୍ଡାରୁ ପଡ଼ି ଚରଚିଲେ ହେଉଛି। ସ୍ୱାମୀ ହେ କହେ ଭୀମ କନ୍ଧ ମୁରୁଖ। କରତା ଆଜ୍ଞାରେ ସର୍ବକାଟ ଯାଉ ନ ପଡୁ ସଂସାରେ ଦୁର୍ଭିକ୍ଷ ॥୬୮॥



## ଭାଗବତ ସ୍ୱର

# ପଞ୍ଚଦଶ ଚଉତିଶା

## 'କ୍ଷ' ଠାରୁ 'କ' ପର୍ଯ୍ୟନ୍ତ

ଖଉ ନ ଥିବ ଯାର ମନ । କ୍ଷୟ ନୋହିବ ପିଣ୍ଡପ୍ରାଣ ॥
ହାଇ ଛାଇକି ଯେ ମାରିବ । ହରେକ କଥାରେ ତରିବ ॥
ସୁଶାନ୍ତି ହୋଇ ଯେ ପାରିବ । ଶୂନ୍ୟବାସୀଙ୍କୁ ସେ ପାଇବ ॥
ସତ୍ୟ ଯେ କହିବ ମୁଖରେ । ସିଦ୍ଧାନ୍ତ ହୋଇବେ ବ୍ରହ୍ମରେ ॥
ସରଣ ଯେହୁ ମାଗୁଥିବ । ସର୍ବ ଆତ୍ମାକୁ ସେ ଚିହ୍ନିବ ॥
ବହୁତ ସେବା ଯେ କରିବେ । ବ୍ରହ୍ମ ଶରୀରେ ଲିନହେବେ ॥
ଲୋଭ ମୋହକୁ ଯେ ଛାଡ଼ିବେ । ଲୋହ ଖପରେ ନ ପଡ଼ିବେ ॥
ରଜ ତାମଶେ ଯେ ନ ଥିବ । ରକ୍ଷା କରିବେ ଗୁରୁଦେବ ॥
ଯୁଗଳେ ଚିତ ଯାର ନାହିଁ । ଯିବ ସେ ଭବ ନଈ ଡେଇଁ ॥
ମହିମା ସାଗରକୁ ଜପ । ମାନୀ କହଇ ଭୀମ ମୁର୍ଖ ॥
ଭକ୍ତୁ ଯେ ଥିବ କରତାଙ୍କୁ । ଭୟ ନ ରହିବ କାହାକୁ ॥
ବିବେକ ବୁଧିରେ ଯେ ଥିବ । ବ୍ରହ୍ମ ପଦକୁ ଯୋଗ୍ୟ ହେବ ॥
ଫୁଙ୍କା ବନ୍ଧକୁ ଯେ ଭେଦିବେ । ଫେରି ମାୟାରେ ନ ପଡ଼ିବେ ॥
ପୂର୍ଣ୍ଣାନନ୍ଦକୁ ଯେ ଭଜିବ । ପରମ ମଣ୍ଡଳେ ରହିବ ॥
ନାମକୁ ଯେ କରିବ ଲୟ । ନ ଥିବ ଜନ୍ମ ମୃତ୍ୟୁ ଭୟ ॥
ଧର୍ମପଥରେ ଯେହୁଥିବେ । ଧନାଢ୍ୟ ଯଶକୁ ଲଭିବେ ॥
ଦୟାରେ ଥିବ ଯାର ଚିତ । ଦର୍ଶନ ପାଇବ ସେ ଭକ୍ତ ॥
ଥୟରେ ଥିବ ଯାର ମନ । ସ୍ଥିତିକି ହେବ ସେ ବୀହନ ॥
ତତ୍ତ୍ୱ ଜ୍ଞାନରେ ଯେହୁ ଥିବେ । ତୁରିତେ ବ୍ରହ୍ମାଣ୍ଡ ତରିବେ ॥
ଅଣାକାରକୁ ଯେ ଭଜିବେ । ଅନ୍ତର୍ଯ୍ୟାମନି ବୋଲାଇବେ ॥
ଧାଡ଼ି ଯେ ସମ୍ଭାଳି ପାରିବେ । ଢାଙ୍କୁଣୀ ଭୀତରେ ରହିବେ ॥

ଡିଙ୍ଗର ନୃହ ସୁଜ୍ଞଜନ । ଡାକି କହୁଛି ଭୀମହୀନ ॥
ଠହରି ରହି ଯେ ପାରିବେ । ଠାକୁର ପାଦେ ଯୋଗ୍ୟ ହେବେ ॥
ଟିଆକୁ ଯେ ପାରିବେ ଯଗୀ । ଟାଣୁଆଁ ପଣେ ହେବେ ଭୋଗୀ ॥
ନିଶ୍ଚଳ ହୃଦୟ ଯା ଥିବ । ନିତ୍ୟ ମଣ୍ଡଳେ ସେ ପସିବ ॥
ଝାଡ଼ ଭିତରେ ଯେ ରହିବେ । ଝଞ୍ଜିକା ଜାଲୁ ଉବୁରିବେ ॥
ଯୁଗେ ତପସ୍ୟା ଯେ କରିବେ । ଯୋଗେଶ୍ୱରଙ୍କୁ ସେ ପାଇବେ ॥
ଛଡ଼ ବେଦ ପରେ ଯାମନ । ଛାଡ଼ି ନ୍ ଯିବ ପିଣ୍ଡ ପ୍ରାଣ ॥
ଚାହିଁ ଯେ ଥିବେ ଅନୁସରି । ଚେତା ନ ବୁଡ଼ିବ ତାଙ୍କରି ॥
ଅଲେଖ ନାମ ଯେ ଭଜିବେ । ଅନାମ ମନ୍ଦିରେ ପସିବେ ॥
ଘୋର କଳିରୁ ଯେ ବଞ୍ଚିବ । ଘଟ ବେଦାନ୍ତି ବୋଲାଇବ ॥
ଗଭୀର ବିଚାରେ ଯେ ଥିବେ । ଗୁରୁ ସେବାକୁ ଲକ୍ଷ ହେବେ ॥
କ୍ଷତୀ ମଣ୍ଡଳେ ଯେହୁଥିବେ । କ୍ଷମାମହିମାଙ୍କୁ ପାଇବେ ॥
କାକୁସ୍ଥେ ବିନୟ ବହୁତ । କହିଲେ ଭୀମ ଅରକ୍ଷିତ ॥

## ଷୋଡ଼ଶ ଚଉତିଶା

କଳିଯୁଗ ହେଲା ଶେଷ । କଳଙ୍କି ରୁପ ପ୍ରକାଶ । କରତ ଲାଗିଲାଣି ଶିରରେ ଆସି, କରବାଳରେ ବିନାଶ ॥୧॥

କ୍ଷିତି ମଧ୍ୟେ ଥୋଇ ମତେ ଖିଆଲ କରୁଛ କେତେ । ଖଣ୍ଡହସ୍ତେ ପ୍ରଭୁ ଦଣ୍ଡ ଦିଆଉଛ ଖଳ ନଗ୍ର ଉପରାନ୍ତେ ॥୨॥

ଗତ କଥା ମାନ ଚିନ୍ତି । ଗୁରୁ ପାଦେ କରି ଭକ୍ତି । ଗରୁ ଚିନ୍ତା ମୋର ହୃଦୟରୁ ଫେଡ଼ ଗୁଣନିଧି ପ୍ରାଣପତି ॥୩॥

ଘୋଟି ରହିଅଛି ନିରଘୁରୁତ ଯେସନେ ଖିରେ, ଘଟେ ଘଟେ ପ୍ରଭୁ ପୁରି ରହିଅଛ । ଘେନି ସକଳ ଶରୀରେ ॥୪॥

ଅଶେଷ ସଂସାରେ ପୁରି। ଅବ୍ୟକତ ରୁପଧାରୀ, ଅରୂପରୂପ ସର୍ବଭୁତେ ସମାନ ଅନ୍ତର ନାହିଁ ତୁମରି ॥୫॥

ଚିଆଁଇ ଗଲାଣି ମତେ। ଚର୍ମଲୋମ ପରିଯନ୍ତେ। ଚାରୁ ଚରଣରେ ଧାଇ ଜଣାଉଛି, ଚତୁର ହେଉଛ କେତେ ॥୬॥

ଛପନାକୋଟିର ପିତା। ଛାଟି କର୍ମ ଦଣ୍ଡଚିତା। ଛପାଦେଇ ଅଛ ସବୁରୀ କପାଳେ, ଛନ୍ଦେ ପିଣ୍ଡକୁ ଗଢ଼ନ୍ତା ॥୭॥

ଯୁଗଶେଷ ହେଲା ଆସି, ଯଶ ରଖ ଶୂନ୍ୟବାସି। ଯେତେଦିନେ ସ୍ୱାମୀ ବୁଝାମଣା ହେବ, ଜାଗ୍ରତେ ମୁଁ ଅଛି ବସି ॥୮॥

ଝାମମାରୁ ଅଛି ମୋତେ ଝଡ଼ି ପଡୁଛି ତରସ୍ତେ। ଝରଝର ନେତ୍ରୁନୀର ବହୁଅଛି, ଝ ଗଡ଼ ଅଣ ଆୟତେ ॥୯॥

ନିରାଶ ନ କର ସ୍ୱାମୀ ନାରାୟଣ ଅନ୍ତର୍ଯାମୀ, ନିରେଖ ପ୍ରାଣୀକି ସାହା ସଖା ହୋଇ ନାମ ରହିଥାଉ ଭୂମି ॥୧୦॥

ଟୋକା ପୋଇଲା ପରାଏ, ଟେକା ଫିଙ୍ଗୁଛନ୍ତି କାୟେ, ଟପା ମାରୁଛନ୍ତି ପରିହାସ କରି, ଟିକାଏ ସମ୍ଭାଳି ନୋହେ ॥୧୧॥

ଠାବେ ଠାବେ ପୁରିଅଛ, ଠିକ କଥା ନୁହେଁ ମିଛ। ଠିକେ କହୁଅଛି ଭୀମ ଅରକ୍ଷିତ। ଠାବ ପରା ଦେଉଅଛ ॥୧୨॥

ଡିଙ୍ଗର ମାନଙ୍କୁ ଚାହିଁ, ଡରୁଅଛି ପ୍ରାଣେ ମୁଁହିଁ, ଡରି ପିଣ୍ଡପ୍ରାଣ ଜଣାଣ କରୁଛି। ଡାକ ନ ଶୁଣ କିଂପାଇଁ ॥୧୩॥

ଢୁକିଲାଣି ସବୁ କଥା, ଢମ ନ ବୁଝ କରତା, ଢଳି ପଡୁଅଛି ପିଣ୍ଡ ପ୍ରାଣମୋର, ଢାଳେ ନ କରୁଛ ଚିନ୍ତା ॥୧୪॥

ଅନମିତେ ବିପ୍ରରାଜ ଅନୁକ୍ଷଣରେ ଦାହିର୍ଯ୍ୟ ଆଣି ଏତେ ସରି କରୁଛନ୍ତି ମତେ। ଅନାଦି ପୁରୁଷ ବୁଝ ॥୧୫॥

ତୀରଣ ଧରୁଛି ଦନ୍ତେ, ତ୍ରାହିକର ସ୍ୱାମୀମତେ, ତପନ କିରଣ ପରାୟେକ ଭଦି, ତେଜ ପ୍ରକାଶ ଜଗତେ ॥୧୬॥

ସ୍ଥାପ ସତ୍ୟ ଧରମକୁ ସ୍ତିତିଦିଅ ଭଗତଙ୍କୁ, ଥରେ ବିଜେ କରି ରବିତଳେ ଆସି, ଥୋଇ ଯାଅ ସମସ୍ତଙ୍କୁ ॥୧୭॥

ଦାବାନଳ ଅଗ୍ନିପ୍ରାୟେ, ଦଗ୍‌ଧି ହେଉଛି କାୟେ, ଦୋଷ ଅପରାଧ କ୍ଷମାକରି ମୋର ଦୂରିତ ଫେଡ଼ ନିଶ୍ଚୟେ ॥୧୮॥

ଧନ୍ୟ ଧନ୍ୟ କଳିଯୁଗ, ଧରି କରୁଅଛି ଭୋଗ ଧର୍ମରାଜ ପ୍ରଭୁ କିସ ଦେଖୁଅଛ, ଧୋଇନେଲେ କି କରିବା ॥୧୯॥

ନୂଆ ନବତନ ହେଉ, ନିନ୍ଦାଯୁଗ କ୍ଷୟେଯାଉ ନୃପତି ବ୍ରାହ୍ମଣ ପରୀକ୍ଷା ଦେଖନ୍ତୁ, ନାମ ରବିତଳେ ରହୁ ॥୨୦॥

ପାପି ବୋଲୁଛନ୍ତି ମୋତେ, ପୂର୍ଣ୍ଣକର ବାଞ୍ଛା ଯେତେ, ପଣତ ପ୍ରସାରୀ ମାଗୁଅଛି ମୁହିଁ ପରୀକ୍ଷା ଦିଅ ଜଗତେ ॥୨୧॥

ଫନ୍ଦା ବୃତ୍ତି ଗୁରୁଧର୍ମ, ଫଳଲୋଭେ କରି କର୍ମ, ଫାସି ଲାଗିଅଛି କଣ୍ଠରେ ମୋହର ଫେଡ଼ ହେ ଅଲେଖ ବ୍ରହ୍ମ ॥୨୨॥

ବହିଯାଉଛି ଦିବସ, ବ୍ରହ୍ମ ହୁଅ ଅବକାଶ, ବାଧିଗଲାଣି ପିଣ୍ଡପ୍ରାଣକୁ ମୋର। ବ୍ରହ୍ମାଣ୍ଡେ ନାହିଁ ନିବାସ ॥୨୩॥

ଭାଳୁଅଛି ଦିବାନିଶି, ଭରସା କରି ମୁଁ ବସି, ଭୀମ ଅରକ୍ଷିତ ଜଣାଣ କରୁଛି, ଭାଦ୍ରବ ହେଲାଣି ଆସି ॥୨୪॥

ମନୋବାଞ୍ଛା କର ସିଦ୍ଧି, ମହିମା କରୁଣାନିଧି। ମହାସଙ୍କଟରୁ ପାରିକର ମତେ, ମହଦ୍‌ପୁରୁଷ ଆଦି ॥୨୫॥

ଜେଷ୍ଠ ମାସୁ ଆସି ଧରା, ଯହଲେ ପଡ଼ିଛି ପରା, ଯେତେ ବୁଝାଇଲେ ନ ବୁଝିଲେ କେହି, ଜାଗ୍ରତେ ନ କଲେ ମାରା ॥୨୬॥

ରକ୍ଷା ନାହିଁ ମୋର କେହି, ରଖ ରଖ ଶୂନ୍ୟ ଦେହି। ରାଜ୍ୟ ଦେଶରୁ ବାହାର କରୁଛନ୍ତି ରାଜା ପ୍ରଜାମେଳି ହୋଇ ॥୨୭॥

ଲାଗିଛନ୍ତି ଧର୍ମେବାଦ, ଲଗାଇ କୁଟିଳ ଛନ୍ଦ, ଲୋକ ବୋଲୁଛନ୍ତି ଶୁଣ ମହାରାଜା, ଲାବର ସେ ଭୀମ କନ୍ଧ ॥୨୮॥

ବିନତୀ ମୋହର ଘେନ, ବିଜଏ କର ଆପଣ, ବଢ଼ିଲାଣି କଥା ଉଚ୍ଚ ବାଚ୍ଚ ହୋଇ, ବୁଝିବା ହେଉ ଆପଣ ॥୨୯॥

ସରଦ ହେଲାଣି ଦେଖ, ଶ୍ରବଣରେ ଶୁଣ ଡାକ, ଶିର କମଳ ଏତେବେଳେ ଯାଉଛି, ଶରଣ ସମ୍ଭାଳି ରଖ ॥୩୦॥

ଶିଷ୍ୟଛନ୍ତି ମୋର ବାଟେ, ସରୋବର ନଦୀ ତଟେ, ସଦ୍‌ଗୁରୁ ବୋଲି ଧ୍ୟାୟୀ ବସିଛନ୍ତି, ସୁବର୍ଣ୍ଣ ଲିଙ୍ଗ ନିକଟେ ॥୩୧॥

ସତ୍ୟ ଯେବେ ଧର୍ମ ପ୍ରଭୁ, ସୁତଡାକ କର୍ଣ୍ଣେ ଶୁଭୁ, ସହିଥିବି ମୁହିଁ କେତେଦିନଯାଏ ସମ୍ଭାଳି ରଖ ଦୁର୍ଯୋଗୁ ॥୩୨॥

ହିନସ୍ତେ ଯାଉଛି ଦିନ ହାଣି ହେଉଛି ଜୀବନ, ହେତୁ ଜ୍ଞାନ ମୋର ବୁଡ଼ି ଯାଉଅଛି। ହିତକାରି ଗୁରୁ ଶୁଣ ॥୩୩॥

କ୍ଷମା ସାଗର ପୁରୁଷ, ଖେଳଲିଳା ପରକାଶ, କ୍ଷିତିମଧ୍ୟେ ଥାଇ ଭଣେ ଭୀମଭୋଇ କ୍ଷମାକର ମୋର ଦୋଷ ॥୩୪॥

## ସପ୍ତଦଶ ଚଉତିଶା

ଖାଇବା ପିଇବା ଦୁର, ଖୀଣ ହେଲାଣି ଶରୀର, ଖଣ୍ଡ ତପସ୍ୟା ହେବାରୁ ଅବା ମୋର ଖଳକୁଟ ମୋ ଉପର ॥୩୫॥

ହେଳା ନୁହେଁ ଗୁରୁଦେବ, ହକ ଯେବେ ଥିବ ଭାଗ୍ୟ, ହରେକ ବିଷୟ ଶ୍ରୀଗୁରୁ ବୁଝିବେ, ହୋଇଯାଉ ଯାହା ହେବ ॥୩୬॥

ଶୂନ୍ୟ ବ୍ରହ୍ମପାଦ ତଳେ, ସିଦ୍ଧି ହେବ କେତେବେଳେ। ଶୟଳ ଦେଶେ ମହିମା ଉଦେହେବେ, ସାକ୍ଷୀ ଦଶଦିଗପାଳେ ॥୩୭॥

ଶାପ୍ୟ ଦେବି କାହିଁପାଇଁ ସନ୍ଥ ନର ଆଜ୍ଞା ନାହିଁ। ସକଳ କଥା ଗୁରୁଦେବ ବୁଝିବେ, ସାନଜୀବ ଅଟେ ମୁହିଁ ॥୩୮॥

ସରିଗଲାଣି ମହତ୍ୱ, ଶିରପରେ ବାଜି ଘାତ, ସ୍ୱର କଣ୍ଠ ମୋର ଶୁଖି ଯାଉଅଛି ସୁରତା ବୁଡ଼ି ଅଚେତ ॥୩୯॥

ବାଚା ବିଚଳିତ ନୋହୁ ଗୁରୁଙ୍କ ବଚନ ରହୁ। ବ୍ରହ୍ମପୁରୁଷଙ୍କ ଆଜ୍ଞା ଅଲଘିତ ବ୍ରହ୍ମାଣ୍ଡରେ କୀର୍ତ୍ତି ରହୁ ॥୪୦॥

ଲଘୁ ଦଶାରେ ମୁଁ ପଡ଼ି, ଲୟକରି କର ଯୋଡ଼ି, ଲତିକାରଜ୍ଜୁରେ ବନ୍ଧନ ପଡ଼ିଛି ଲାଗିଛି ମାୟା ଦଉଡ଼ି ॥୪୧॥

ରୂପ ଅରୂପ ଭିତରେ ରହି ଅଛ ସର୍ବଠାରେ, ରଖ ରଖ ସ୍ୱାମୀ ଜଗତ ଭଗତ, ନବଖଣ୍ଡ ମେଦନୀରେ ॥୪୨॥

ଯତିସତୀ ନୁହେଁ ମୁହିଁ। ଯୋଗ ତପ କରି ନାହିଁ ଜୀବର ଠାକୁର ସାମରଥ ବୋଲି ଜଣାଣ କରୁଛି ଧ୍ୟାୟୀ। ॥୪୩॥

ମହିମା ଗୁରୁଙ୍କୁ ଧ୍ୟାୟୀ, ମନ୍ତ୍ର ଯନ୍ତ୍ର ନ ଜାଣଇ, ମର୍ତ୍ତ୍ୟପୁରେ ଥାଇ ଭୀମ ଅରକ୍ଷିତ, ମହାମହିମାଙ୍କୁ ଧ୍ୟାୟୀ ॥୪୪॥

ଭାରା ତୁଟିବା ପର୍ଯ୍ୟନ୍ତେ ଭୟ ମାଡୁଅଛି ମୋତେ। ଭାଣ୍ଡ ଭବିଷ ବୋଲୁଛନ୍ତି ସମସ୍ତେ, ଭାଷା କହୁଛନ୍ତି କେତେ ॥୪୫॥

ବୃଦ୍ଧ ରୂପ ହୋଇଅଛ, ବ୍ରହ୍ମାଣ୍ଡେ ଧର୍ମ ସ୍ଥାପିଛ, ବହିଗଲାଣି ଏତେ ଦିବସ ଆସି, ବେଗ କରି ନ ବୁଝୁଛ ॥୪୬॥

ଫାଟିଯାଉ କଳିଯୁଗ, ଫୁଟିଦିଶୁ ଧର୍ମମାର୍ଗ, ଫଟା ଗୃହମାନ ଷୋଳପୁରି ହେଉ ଫଳଦିଅ ଗୁରୁଦେବ ॥୪୭॥

ପ୍ରାଣେ ନାହିଁ ମୋର ଆଶ, ପରମ ବ୍ରହ୍ମପୁରୁଷ, ପୂର୍ଣ୍ଣକର ସ୍ୱାମୀ ମନର କାମନା, ପାଦତଳେ କରି ଦାସ ॥୪୮॥

ନବଖଣ୍ଡ ପରିଯନ୍ତେ ନିନ୍ଦା ହୋଇଲାଣି ମତେ, ନବାବ ଶୁବା ସମସ୍ତେ ଜାଣିଲେଣି, ନର ଦେବ ଆଦି ଯେତେ ॥୪୯॥

ଧନ୍ଦାରେ ପଡ଼ିଛି ମୁହିଁ, ଧାଇ ଗୁରୁ ପାଦ ଦୁଇ, ଧରିଆଣି ମୋତେ ଶାସ୍ତି ଦେଉଛନ୍ତି, ଧରମ ପୁରୁଷ ଥାଇ ॥୫୦॥

ଦୁଃଖିଜନ ବନ୍ଧୁହୋଇ ଦୟା ନହୁଛି କିମ୍ପାଇ ଦେଖ ଦେଖ ସ୍ୱାମୀ ଭଗତବୃନ୍ଦଙ୍କୁ ଦୁଃଖେ ପଡ଼ିଛନ୍ତି ରହି ॥୫୧॥

ଥରକୁ ଥର ବିପତ୍ତି ଥୟେ ରହୁ ନାହିଁ ମତି, ସ୍ଥାପିଥିଲା ଧର୍ମ ଉଠାଇ ନେଲେଣି ଥାଇ ଅଭୟ ମୁରତି ॥୫୨॥

ତିଆରି କହୁଛି ମୁହିଁ। ତରତର ନୁହ କେହି, ତପତି ଉଠିବା ଯାଏ ଅନ୍ତପୁରେ ମନ ମୋର ସୁସ୍ଥ ନାହିଁ ॥୫୩॥

ଅଣଆୟତେ ବିମୁଖ, ଅନୁକ୍ଷଣେ ନାହିଁ ସୁଖ, ଆଣି ଏତେସରି କରୁଛନ୍ତି ମୋତେ, ଆଣାକାର ସ୍ୱାମୀ ଦେଖ ॥୫୪॥

ଢମାଳିଆ ମଣି ଚିତ୍ତେ, ଢେଡ଼ ସଙ୍ଗେ ଗଣିମତେ, ଢାଉରଙ୍ଗିଆ ବୈଷ୍ଣବ ଅଟଇ, ଢେଗମେଲୁଛନ୍ତି କେତେ ॥୫୫॥

ଡୋଳା ଗୋଚରେ ଦେଖନ୍ତେ, ଦଣ୍ଡ ଦେଉଛନ୍ତି ନିତ୍ୟେ, ଡାକି କହୁଅଛି ଭୀମ ଅରକ୍ଷିତ, ଦାଣ୍ଡେ ଥାଇ ଦୃଢ଼ ବ୍ରତେ ॥୫୬॥

ଠିକ ଠିକ ଲୋକ ଯେତେ, ଠକବୋଲୁଛନ୍ତି ମୋତେ, ଠାକୁର ବନିଛି କନ୍ଧପିଲା ହୋଇ ଠକୁଅଛନ୍ତି ସମସ୍ତେ ॥୫୭॥

ଟମକ ଦିଆଇ ଉଚ୍ଚେ, ଟାହି କରୁଛନ୍ତି ପଛେ, ଟିକେ ମହିମା ପରିକ୍ଷା ନ ଦେଖିଲେ, ଟାଣ କହୁଛନ୍ତି ମିଛେ ॥୫୮॥

ନିଶିଦିବସରେ ମୁଁହିଁ ନିଷ୍କାମବ୍ରହ୍ମକୁ ଧ୍ୟାୟୀ, ନିରାଶ ହେଉଛି ଘୋରକଳିଯୁଗେ, ନରଦେହେ ପ୍ରଭୁଥାଇ ॥୫୯॥

ଝେଞ୍ଜକାରେ ଅନ୍ୟାଚାର, ଝଡ଼ି ପଡୁଛି ବିଚାର, ଝାମ୍ପଅଛି କାଳ ମହାଜାଲ ପ୍ରାୟେ, ଝଟତୀରେ ରକ୍ଷାକର ॥୬୦॥

ଜମା ହୋଇଛନ୍ତି ଗୁଡ଼େ ଜଟିଳ ପାମର ମୁଢ଼େ, ଜାତିଗୋତ୍ର କୁଳ ମହତ୍ୱ ବୁଡ଼ାଇ ଯୋଗୀ ହୋଇଛନ୍ତି କେଡ଼େ ॥୬୧॥

ଛଳକଥା ମଣି ସତ, ଛାଡ଼ିଆସି ଦାରାସୁତ, ଛାଡ଼ ବୋଲୁଛନ୍ତି ଏହାଙ୍କର କଥା, ଛୋବାରିଆ ସାଧୁସନ୍ଥ ॥୬୨॥

ଚିହ୍ନିଅଛୁ ତାଙ୍କୁ ଆମ୍ଭେ, ଚୋର ଅଟନ୍ତି ଏ ସର୍ବେ। ଚଠା ଲମ୍ପହତା ଖଞ୍ଜ କହୁଛନ୍ତି ଚଳି ମହାରାଜା ଆଗେ ॥୬୩॥

ଅନ୍ୟାୟ ହେଲାଣି କାଳ ସାହାହୁଅ ଆଦିମୂଳ, ଅଣ୍ଟି ଗଲାଣି ପିଣ୍ଡ ପ୍ରାଣକୁ ମୋର, ଅନୁସରି ଏତେବେଳ ।।୬୪।।

ଘୋର ଅନ୍ୟାୟ ଆଚରୀ, ଦମ୍ଭେ ଆଣିଛନ୍ତି ଧରି ଘେନି ବଚନ ହାକିମ ନ ବୁଝିଲା, ଘୁଷା ହେଉଛନ୍ତି ଫେରି ।।୬୫।।

ଗୁରୁଦେବ ଯେବେ ସତ୍ୟ, ଗର୍ବ ଗଞ୍ଜିବେ ନିୟତ, ଗାରିମା ଭାଙ୍ଗିବେ ଦୃଷ୍ଟ ଦାନବର, ଗଡ଼ିଯିବେ ଭୂମିଗତ ।।୬୬।।

ଖଞ୍ଜୁଆ ମିଛୁଆ ଲୋକେ ଖଳଖଳ ହସି ମୁଖେ, ଖିରସିନ୍ଧୁ ବାସି, ଏକଥା ବୁଝିବେ, କ୍ଷୀତିରେ ପଡ଼ିଛି ଦୁଃଖେ ।।୬୭।।

କିସ କରିବି ଜଣାଣ, କରତା ଅଟ ଆପଣ, କାନ୍ଦି କହୁଅଛି ଭୀମ ଅରକ୍ଷିତ କରତି ହୋଇ ଜୀବନ ।।୬୮।।

## ଅଷ୍ଟଦଶ ଚଉତିଶା

## ('କ୍ଷ' ଠାରୁ 'କ' ପର୍ଯ୍ୟନ୍ତ)

ଖର୍ବ, ଖର୍ବ ହୋଇ ଖଳା ଚଉକତି ପଡ଼ିଥିବେ ପଟୁଆରି। ଖଦି ଚାମର ବିଞ୍ଚଣା ପକାଇବେ ମୁଖେ ପ୍ରଭୁ ନାମଧରି ହେ ।।୩୫।।

ହରିହରି ଡାକ ପଡୁଥିବ ଉଚ୍ଚେ ହୁଳହୁଳି ଦେଉଥିବେ। ହସି ଗଦଗଦେ ମନର ଉଚ୍ଛକେ ଆନନ୍ଦିତ ହୋଇ ସର୍ବେ ହେ ।।୩୬।।

ସତ୍ୟାଦି ଯୁଗ ପରକାଶ ହୋଇବ ଶୋଭା ଦିଶୁଥିବ ମହି। ସମସ୍ତେ ଏକ ଧର୍ମ ପଥେ ଚାଲିବେ ଏକାନ୍ତ ଜୀବନ ହୋଇ ହେ ।।୩୭।।

ସଦଜ୍ଞାନ ହୃଦ ପଦ୍ମରେ ପ୍ରକାଶ ସିଦ୍ଧାନ୍ତ ହୋଇବ ଅଙ୍ଗ। ଶୁନ୍ୟପୁରୁଷଙ୍କୁ ଚର୍ମ ନେତ୍ରେ ଦେଖି କରୁଥିବେ ସାଧୁ ସଙ୍ଗ ହେ ।।୩୮।।

ଶିରୋମଣି ମାନେ ସର୍ବଦା ଦିନରେ କରିବେ ସେବା ଭଗତି। ଶିର ଲୋଟୁଥିବ ପ୍ରଭୁ ପଦ୍ମପାଦେ ଲଭିବେ ଗତି ମୁକତି ହେ ।।୩୯।।

ବସନ୍ତ ବହିବ ସଦା ସରବଦା ବାରମାସୀ ଘନଘନ । ବାଞ୍ଛିତ କାମନା ପୂର୍ଣ୍ଣ କରାଇବେ ବୁଝିବେ ଗୁରୁ ରାଜନ ହେ ॥୪୦॥

ଲକ୍ଷେ ଛତ୍ରିବାନା ଲକ୍ଷେକ ଦୀହୁଡ଼ି ଲକ୍ଷ ଲକ୍ଷ ବୀରତୁରୀ । ଲକ୍ଷେ ନୃପବର ଲକ୍ଷେକ ଚାମର ଲକ୍ଷେକ ଦାଉଣ୍ଡିଭେରୀ ହେ ॥୪୧॥

ରଖ ରଖ ମହି ଶଢ କରୁଥିବ ନିରାଲମ୍ଭ ପ୍ରଭୁ ବିଜେ । ରସାମେଦନୀ ଉଛୁଳି ପଡୁଥିବ ବସିଥିବେ ଗୁରୁରାଜେ ॥୪୨॥

ଯୁବା ଯୁବତୀ ଏ ଜାତିରୁପ ଚାହିଁ ଆନନ୍ଦିତ ହୋଇ ସର୍ବେ । ଯୋଗୀ ପୁତ୍ରମାନେ ସୁବର୍ଣ୍ଣ ଗରାରେ ପଞ୍ଚାମୃତ ଢାଳୁଥିବେ ହେ ॥୪୩॥

ମଦନ ମୋହନ ରୁପ ପ୍ରକାଶିବେ ମତ୍ତଗଜ ସିଂଘଠାଣି । ମନ୍ଦ ମନ୍ଦ ଶୋଭା ଚାଲିବା ଦେଖିବେ ଭୀମ ଅରକ୍ଷିତ ଭଣି ହେ ॥୪୪॥

ଭବଶାନ୍ତି କଥା ମାନ, ଭାଷା ପରବନ୍ଧେ ଜାଣ । ଭାତ ବରତନ ଦେବ ଗୁରୁ ରାଜନ ହେ ॥୪୫॥

ବାଉନ କୋଟି ଭଣ୍ଡାର, ବନ୍ଦି ହେବ ଏକଠାର ବୁଝିଥାଅ ସୁଜ୍ଞଜନେ, ଆଗ ବିଚାର ହେ ॥୪୬॥

ଫୁଲାପଣ ନୋହେ କଥା, ଫଳ ବାଣ୍ଟିବେ କରତା । ଫେରି କହିଦେଲୁ ଆମ୍ଭେ ହୁଅ ସୁଚେତା ହୋ ॥୪୭॥

ପ୍ରାଣ ରଖି ଥାଅ ଦେହେ, ପଡ଼ିଯାଉନାହିଁ କାୟେ ପାଇବ ଗତି ମୁକତି, ନ ଥିବ ଭୟେ ହେ ॥୪୮॥

ନିତ୍ୟ ପାଦତଳେ ଖଟି ନାମ ବ୍ରହ୍ମ ଥାଅ ରଟି । ନାବ ମଙ୍ଗେଥିଲେ ଯମ ଯିବ ଲେଉଟି ହେ ॥୪୯॥

ଧ୍ୟାନ କରିଥାଅ ନୀତି ଧର୍ମପୁରୁଷଙ୍କୁ ଚିନ୍ତି, ଧରିଥିଲେ ହେତୁକରି ଲଭିବ ଗତି ହେ ॥୫୦॥

ଦୁଃଖ ଭାଗ ମୁଖକରି, ଦ୍ୱାରକୁ ଥାଅ ଆବୋରି । ଦରଶନ ଦେବେ ନିଶ୍ଚେ ଅରୂପ ହରି ହେ ।।୫୧।।

ଥୋଇବେ ଯତନ କରି ଥାଅ ସର୍ବେ ଅନୁସରି । ଥିତିକି ଲଭିଲେ ଦୁଃଖଦେବ ପାସେରି ହେ ।।୫୨।।

ତତ୍ୱ ଅଟଇ ବଚନ ତାଣ୍ଡବ ନୃତ୍ୟରେ ଜାଣ ସ୍ତିରିପୁରୁଷ ହୋଇବ ଏକ ସମାନ ହେ ।।୫୩।।

ଅଣାକାର ଅନିର୍ଜନ । ଅଣ ଅକ୍ଷରେ ତାରିଣ । ଅନ୍ତର୍ଗତେ ଅନୁଭବେ ହୃଦରେ ଜପ ହେ ।।୫୪।।

ଢଳହଳ ବ୍ରହ୍ମରୂପ । ଢାଙ୍କୁଣି ଫିଟାଇ ଦେଖ । ଢାଉ ଢାଉ ଜଳୁଛନ୍ତି ଜୋତି ସ୍ୱରୁପ ହେ ।।୫୫।।

ଡଗରା ପରାୟେ ହୋଇ ଡାକି କହେ ଭୀମଭୋଇ । ଡର ଭୟ ନାହିଁ କିଛି ଆସ ଚଳାଇ ହେ ।।୫୬।।

ଠାବେ ଠାବେ ନୃତ୍ୟଗୀତ କରୁଥିବେ ଠାକୁର ଛାମୁ ଆଜ୍ଞାରେ । ଠାକୁରାଣୀମାନେ ଅର୍ଘ୍ୟ ବନ୍ଦାଇବେ ହରଷ ହୋଇ ମନରେ ।।୫୭।।

ଟୀକା ଚନ୍ଦନ କୋପଲେ ଦେଇଥିବେ ଟମାଳିଆ କଥା କହି ଟାକି ରହିଥିବେ ଶ୍ରୀମୁଖ ଆଜ୍ଞାକୁ ନବତନ ମହାଦେଇ ହେ ।।୫୮।।

ନିଶିଦିବସ ବାରଣ ଯିବ ନାହିଁ ଲୀଳା ବିନୋଦରେ ପସି । ନିରନ୍ତରେ ମୁଖ ଗହଳ ଶବଦ ମେରୁ ପଡୁଥିବ ଖସି ହେ ।।୫୯।।

ଝଟଝଟ ହୋଇ ଫୁଟି ଦିଶୁଥିବେ ସ୍ୱରୂପ ଧବଳମୟେ । ଝାଉ ଝାଉ ଖିର ଜଳ ବରଷିବ ନବଖଣ୍ଡ ପୃଥୀଯାଏ ହେ ।।୬୦।।

ଯମ ଖଟିଥିବ ଚରଣ ପଙ୍କେଜେ ଯତନରେ ସେବାକରି । ଜୀବର ଉପରେ ଦୟା ଧର୍ମଥିବ ଅକାଳେ ନ ଯିବେ ମରି ହେ ।।୬୧।।

ଛଡ଼ରଷପାକ ଭୋଜନ କରିବେ ଛାୟା ମଣ୍ଡପରେ ବସି। ଛାତି ଡେରି ଭକ୍ତେ ବ୍ରହ୍ମାଣ୍ଡେ ଚାଲିବେ ବୋଲାଇବେ ଦେବଅଂଶୀ ହେ ॥୬୨॥

ଚାମର ପଖା ପାରୁଶେ ଢାଳୁଥିବେ ଚନ୍ଦନ କର୍ପୂରବୋଳି। ଭକ୍ତ ମାଆମାନେ ଶ୍ରୀମୁଖକୁ ଚାହିଁ ଦେଉଥିବେ ହୁଳହୁଳି ହୋ ॥୬୩॥

ଆୟୁଷ ବଢ଼ିବ ଅକ୍ଷୟେ ହୋଇବେ ଅଣିମା ନିଧି ବିହରି । ଉଦେ ଅସ୍ତରେ ଦର୍ଶନ କରୁଥିବେ ବୋଲୁଥିବେ ଶୁନ୍ୟ ହରି ॥୬୪॥

ଘରଦ୍ୱାର ତେଜି ନିଷ୍କାମ ଚିତରେ ଘାଟରେ ଅଛନ୍ତି ଜଗି, ଘୋର କଳିଯୁଗେ ରକ୍ତମାଂସ ଦେହେ କୁହାଇଅଛନ୍ତି ଲାଗି ହେ ॥୬୫॥

ଗାଦି ଗରଦାରେ ବସିବେ ସମସ୍ତେ ଗତି ମୁକତି କି ଲଭି । ଗୁରୁଦେବ ସ୍ୱାମୀ ନିଶ୍ଚୟେ ବୁଝିବେ ମନେ ଯାକୁଛନ୍ତି ଭାବି ହେ ॥୬୬॥

ଖଡ଼ଖଡ଼ି ପାଲଙ୍କିରେ ବିଜେ କରି ବ୍ରହ୍ମାଣ୍ଡେ ବେଢ଼େ ବୁଲିବେ । କ୍ଷମାଦି ମହିମା ବିଜେ କରିଛନ୍ତି ବ୍ରହ୍ମାଣ୍ଡକୁ ସଂଖୁଳିବେ ହେ ॥୬୭॥

କାଟ ହୋଇଲାଣି କଳି ପାପଭାର, ଅଳ୍ପ ଦିନେ ଯିବେ ନାଶ। କରତା ପୁରୁଷ ଚରଣକୁ ଧ୍ୟାୟୀ କହେ ଭୀମ ଭକ୍ତଦାସ ॥୬୮॥

❑❑❑



ସଂସାରେ ଆସି ଶନିଶ୍ଚର ଘୋଟିଛି ରକ୍ଷାକର ବାନା ଘୋଡ଼ାଇ।
ଶରଣ ସମ୍ଭାଳି ମୋକ୍ଷକର ଏବେ ଗ୍ରହକେଳଷକୁ ଛଡ଼ାଇ।
ସ୍ୱାମୀ ହେ ! ଶୁଭ ଅନୁକୂଳ ପ୍ରକାଶ।
ଅଲେଖ ପୁରୁଷ ଅନ୍ତର୍ଗତେ ଜାଣି ରଖ ଏ ଧରତୀ ଆକାଶ।

– ଭୀମଭୋଇ